# ଅଖ୍ୟାତ ଓଡ଼ାସିଂହର
# ପ୍ରଖ୍ୟାତ ପାତାଳୀ ଗରୁଡ଼

ଜଗବନ୍ଧୁ ପ୍ରଧାନ



# ଅଖ୍ୟାତ - ଓଡାସିଂହର ପ୍ରଖ୍ୟାତ ପାତାଳୀ ଗରୁଡ଼

ଲେଖକ :- ଶ୍ରୀଜଗବନ୍ଧୁ ପ୍ରଧାନ

ଓଡାସିଂହ (ସାଲେପୁର) କଟକ

☆ ପ୍ରାପ୍ତିସ୍ଥାନ ଜଗବନ୍ଧୁ ପ୍ରଧାନ
'ସମାଜ' କାର୍ଯ୍ୟାଳୟ, କଟକ

☆ ବିଦ୍ୟାପୁରୀ, ବିନୋଦବିହାରୀ, କଟକ - ୨

☆ ଅକ୍ଷର ସଜ୍ଜା : ଇଉନାଇଟେଡ୍ ସିଷ୍ଟମ୍
ଭୁବନେଶ୍ୱର

ମୂଲ୍ୟ : ୧୨ଟଙ୍କା



**Dr. Radhanath Rath**
*Editor, "The Samaj"*

Phone:601183
**Gopabandhu Bhawan,**
*Cuttack-753001*
Date: 12.11.96

ଶ୍ରୀ ଜଗବନ୍ଧୁ ପ୍ରଧାନଙ୍କ ଦ୍ୱାରା ଲିଖିତ ଓଡାସିଂହର ପାତାଳୀ ଗରୁଡ ଶୀର୍ଷକ ପୁସ୍ତକ ଦେଖିବାର ସୁଯୋଗ ଲାଭ କଲି । ଅନେକ ପୌରାଣିକ ଓ ଐତିହାସିକ ତଥ୍ୟ ଉଲ୍ଲେଖ କରି ସେ ଗରୁଡଙ୍କ ବିଷୟରେ ଏଥିରେ ବିସ୍ତୃତ ଆଲୋଚନା କରିଛନ୍ତି । ମୁଁ ତାଙ୍କୁ ମୋର ଶୁଭକାମନା ଜଣାଉଛି ଓ ପୁସ୍ତକର ପ୍ରସାର ଆଶା କରୁଛି ।



**ଜାନକୀ ବଲ୍ଲଭ ପଟ୍ଟନାୟକ**

*ମୁଖ୍ୟମନ୍ତ୍ରୀ*

ଜାନକୀ ବଲ୍ଲଭ ପଟ୍ଟନାୟକ
ମୁଖ୍ୟମନ୍ତ୍ରୀ



ଓଡ଼ିଶା ସରକାର

ସଂ..........................

ଭୁବନେଶ୍ୱର

ତା.......8.11.96..

# ଅଗ୍ରଲେଖ

ସାମ୍ବାଦିକ ଶ୍ରୀ ଜଗବନ୍ଧୁ ପ୍ରଧାନଙ୍କ ଦ୍ୱାରା ରଚିତ "ଅଖ୍ୟାତ ଓଡାସିଂହର ପ୍ରଖ୍ୟାତ ପାତାଳୀ ଗରୁଡ" ପୁସ୍ତିକା ପ୍ରକାଶ ପାଇଥିବା ଜାଣି ଅତ୍ୟନ୍ତ ଆନନ୍ଦିତ ।

ସାଲେପୁର-ମାହାଙ୍ଗା ଚୌଦ୍ୱାର ଅଞ୍ଚଳ ଏକଦା ଆମ ସଂସ୍କୃତି ଓ ପରଂପରାରେ ପ୍ରାଧ୍ୟାନ୍ୟ ଲାଭ କରିଥିଲା । ଓଡାସିଂହର 'ପାତାଳୀ ଗରୁଡ'ର ମହାତ୍ମ୍ୟ ଆମର ଉଚ୍ଚ ଧାର୍ମିକ ଓ ସାଂସ୍କୃତିକ ବିଭବର ଆଭାସ ଦିଏ । ଏ ସଂପର୍କରେ ଆଲୋକପାତ କରିବା ଦିଗରେ ଶ୍ରୀ ପ୍ରଧାନଙ୍କ ଆୟାସସାଧ୍ୟ ଉଦ୍ୟମ ପ୍ରଶଂସନୀୟ ।

ପୁସ୍ତକଟିର ବହୁଳ ପ୍ରସାର କାମନା କରିବା ସଙ୍ଗେ ସଙ୍ଗେ ଶ୍ରୀ ପ୍ରଧାନଙ୍କ ଲେଖକ ଜୀବନର ଉତ୍ତରୋତ୍ତର ଉନ୍ନତି କାମନା କରୁଛି ।

( ଜାନକୀ ବଲ୍ଲଭ ପଟ୍ଟନାୟକ )

ଶ୍ରୀ କାହ୍ନୁ ଚରଣ ଲେଙ୍କା
ରାଜସ୍ୱ - ପରିବହନ ମନ୍ତ୍ରୀ, ଓଡ଼ିଶା



ଓଡ଼ିଶା ସରକାର

ଭୁବନେଶ୍ୱର
୦୨।୧୧।୯୬

# ଶୁଭେଚ୍ଛା

ସାଂବଦିକ ଶ୍ରୀ ଜଗବଂଧୁ ପ୍ରଧାନଙ୍କ ଲିଖିତ 'ଅଖ୍ୟାତ ଓଡ଼ାସିଂହର ପ୍ରଖ୍ୟାତ ପାତାଳୀ ଗରୁଡ଼' ପୁସ୍ତକ ପାଠ କଲି । ଓଡ଼ାସିଂହ ଓ ସାଲେପୁର - ମାହାଙ୍ଗା - ଚୌଦ୍ୱାର ଅଞ୍ଚଳରେ ଯେଉଁ ପୌରାଣିକ ମହତ୍ତ୍ୱ ରହିଛି, ସେ ସଂପର୍କରେ ସାଧାରଣ ଲୋକେ ଅନଭିଜ୍ଞ ନିଶ୍ଚୟ । ଏହି ପୌରାଣିକ ଓ ଐତିହାସିକ ତଥ୍ୟକୁ ଶ୍ରୀ ପ୍ରଧାନ ଉପସ୍ଥାପନ କରି ଧନ୍ୟବାଦାର୍ହ ହୋଇଛନ୍ତି ।

ଶ୍ରୀ ପ୍ରଧାନଙ୍କ ମହନୀୟ ଉଦ୍ୟମକୁ ମୁଁ ସାଧୁବାଦ ଜଣାଇବା ସଂଗେ ସଂଗେ ଏକ ଐତିହାସିକ - ସତ୍ୟକୁ ପ୍ରଖ୍ୟାପିତ କରି ଆମ ସାହିତ୍ୟକୁ ସମୃଦ୍ଧ କରିବା ପ୍ରୟାସ କରିଥିବାରୁ ତାଙ୍କ ସାହିତ୍ୟ ସାଧନାକୁ ସ୍ୱାଗତ କରୁଛି ।

ସ୍ୱା : କାହ୍ନୁ ଚରଣ ଲେଙ୍କା




**ଶ୍ରୀ ଭୂପିନ୍ଦର ସିଂ,**
ମନ୍ତ୍ରୀ, ସଂସ୍କୃତି-ପର୍ଯ୍ୟଟନବିଭାଗ, ଓଡ଼ିଶା

ଭୁବନେଶ୍ୱର
୦୪।୧୧।୯୬

# ଅଭିମତ

'ଅଖ୍ୟାତ - ଓଡ଼ାସିଂହର ପ୍ରଖ୍ୟାତ ପାତାଳୀଗରୁଡ଼' ପୁସ୍ତକର କିୟଦଂଶ ପାଠ କରି ଆପ୍ୟାୟିତ ହେଲି ଲେଖକ ଶ୍ରୀ ଜଗବନ୍ଧୁ ପ୍ରଧାନ ବହୁଶ୍ରମ କରି ଗୋଟିଏ ଅଞ୍ଚଳର ପୁରାତନ - ଐତିହ୍ୟକୁ ଲୋକଲୋଚନକୁ ଆଣିବା ପ୍ରୟାସ କରିଛନ୍ତି, ଏହା ସୁଖର କଥା । ଆମ ଉତ୍କଳର କଳା ସଂସ୍କୃତି ମହାନ୍ ଓ ପ୍ରତ୍ୟେକ ଅଞ୍ଚଳର ପଟ୍ଟଭୂମିରେ ବହୁ ମହତ୍ତ୍ୱପୂର୍ଣ୍ଣ-ଅଧ୍ୟାୟ ରହିଛି । ସେ ଦୃଷ୍ଟିରୁ ଶ୍ରୀ ପ୍ରଧାନଙ୍କ ପୁସ୍ତକ ନିଶ୍ଚିତ ଭାବେ ଉପାଦେୟ ମନେହୁଏ ।

ଏହି ପୁସ୍ତକ ପାଠକ ମହଲରେ ଆଦୃତ ହେବ ବୋଲି ମୋର ଦୃଢ଼ ବିଶ୍ୱାସ ।

ସ୍ୱା : ଭୂପିନ୍ଦର ସିଂ

# ମୁଖବନ୍ଧ

''ଅଖ୍ୟାତ -ଓଡ଼ାସିଂହର ପ୍ରଖ୍ୟାତ ପାତାଳୀ ଗରୁଡ଼'' ପୁସ୍ତକ ପାଠ କରି ଅତ୍ୟନ୍ତ ଆନନ୍ଦିତ ହେଲି । ଲେଖକ ଶ୍ରୀ ଜଗବନ୍ଧୁ ପ୍ରଧାନ ସାଲେପୁର -ମାହାଙ୍ଗା ଅଞ୍ଚଳର ଐତିହ୍ୟ, ଗୌରବର ପ୍ରଖ୍ୟାପନ କରିବା ସଙ୍ଗେ ସଙ୍ଗେ ଓଡ଼ାସିଂହ ଗ୍ରାମରେ ଥିବା ପ୍ରଖ୍ୟାତ ପାତାଳୀ ଗରୁଡ଼ ମୂର୍ତ୍ତି ସମ୍ପର୍କରେ ଯେଉଁ ବିଶ୍ଳେଷଣ ଓ ତତ୍ତ୍ୱପୂର୍ଣ୍ଣ ଆଲୋଚନା ଏହି ପୁସ୍ତକରେ କରିଛନ୍ତି, ତାହା ପ୍ରକୃତରେ ଅନନ୍ୟ ସାଧାରଣ । ଓଡାସିଂହ ଅଞ୍ଚଳରେ ଯେ ଦିନେ ପୁରୁଷୋତ୍ତମ ଦେବଙ୍କ ପାଦ ପଡ଼ିଥିଲା ଓ ବୌଦ୍ଧଭିକ୍ଷୁଗଣ, ନାଗାଗଣ ଏହି ଅଞ୍ଚଳକୁ ଶହଶହ ବର୍ଷ ପୂର୍ବରୁ ଆସିଥିଲେ, ଏହା ବାସ୍ତବରେ ଅତ୍ୟନ୍ତ ଚମକପ୍ରଦ ତଥ୍ୟ । ଶ୍ରୀ ପ୍ରଧାନ ଗଭୀର ଭାବେ ଏହାର ଅନୁଧ୍ୟାନ, ଅନୁଶୀଳନ ଓ ପର୍ଯ୍ୟବେକ୍ଷଣ କରିଛନ୍ତି ଓ ବଡ଼ ଚାତୁରୀପୂର୍ଣ୍ଣ ଭାବେ ତାତ୍ତ୍ୱିକତା ସହ ଏହାର ପ୍ରାମାଣିକତା ମଧ୍ୟ ଉପସ୍ଥାପନ କରିଛନ୍ତି ।

ଶ୍ରୀ ପ୍ରଧାନଙ୍କ ବୃତ୍ତି ସାମ୍ବାଦିକତା । ମାତ୍ର ବୌଦ୍ଧିକତା ପ୍ରସୂତ ଜ୍ଞାନରେ ସେ ପ୍ରଦୀପ୍ତ । ସରଳ - ସାଧାରଣ ମଣିଷଟି ଭିତରେ ଅନେକ ଗୁଣ ଗୌରବ ଲୁଚିରହିଚି । ତାହା ଏହି ଗ୍ରନ୍ଥରୁ ପ୍ରମାଣିତ । ପୁସ୍ତକର ଛତ୍ରେ ଛତ୍ରେ ଲେଖକଙ୍କ ପ୍ରବଳ ଜ୍ଞାନ ପିପାସା ଜାଗରିତ ନିଶ୍ଚୟ ।

ଶ୍ରୀ ପ୍ରଧାନଙ୍କ ଏହି ସାରସ୍ୱତ - ସାଧନାକୁ ମୁଁ ସ୍ୱାଗତ ଜଣାଇ ଏହି ଗ୍ରନ୍ଥ ପାଠକ ପାଠିକା ଓ ଗବେଶକଙ୍କ ମଧ୍ୟରେ ଆଦୃତ ହେବ ବୋଲି ଦୃଢ଼ ବିଶ୍ୱାସ କରୁଛି ।

**ପଣ୍ଡିତ ପ୍ରବୋଧ କୁମାର ମିଶ୍ର**
ସଂପାଦକ, ନିତ୍ୟନୂତନ, ଭୁବନେଶ୍ୱର
ତାରିଖ :- ୦୭।୧୧।୧୯୯୬

# ଉତ୍ସର୍ଗ

ବିଂଶଶତାବ୍ଦୀର ସ୍ମରଣୀୟ ବ୍ୟକ୍ତିତ୍ୱ, ଶତାବ୍ଦୀ ପୁରୁଷ,

ଭାରତର ଯଶସ୍ୱୀ ସାମ୍ବାଦିକ - ଜନନାୟକ,

ତଥା 'ସମାଜ' ସଂପାଦକ ପଦ୍ମଭୂଷଣ

ଡକ୍ଟର **ରାଧାନାଥ ରଥଙ୍କ** ପବିତ୍ର

କର କମଳରେ -ଗଭୀର ଶ୍ରଦ୍ଧା

ଓ ଭକ୍ତିର ସହ ଏହି

ପୁସ୍ତକ ଉତ୍ସର୍ଗ

ହେଲା ।

ବିନୀତ ଲେଖକ
**ଜଗବନ୍ଧୁ ପ୍ରଧାନ**
ଓଡ଼ାସିଂହ,
ସାଲେପୁର, କଟକ ।

ତାରିଖ : ୨୧।୧୧।୧୯୯୬
(ଗରୁଡ଼ ଏକାଦଶୀ)

## ଲେଖକର କିଂଚିତ୍ :

ଭକ୍ତଙ୍କର ମନବାଞ୍ଛା ପାଇଁ ଭଗବାନ୍ । ଏହା ପ୍ରମାଣିତ ହୋଇଛି ଓଡ଼ାସିଂହରେ । ସ୍ୱୟଂ ଗରୁଡ଼ ମହାପ୍ରଭୁ ବିଷ୍ଣୁଙ୍କର ପରମଭକ୍ତ । ଓଡ଼ାସିଂହଠାରେ ସେ ପାତାଳ ସମ୍ଭୂତ । ଏହା ପ୍ରାୟ ଦ୍ୱାପର ଯୁଗର କୀର୍ତ୍ତି । ତ୍ରେତୟା ଯୁଗରେ ଦ୍ରୋଣ ଏଠାରେ ଗରୁଡ଼ ବ୍ୟୁହ କରି ସମରାଭ୍ୟାସ କରୁଥିଲେ ବୋଲି କୁହାଯାଏ ।

ଚୋଡ଼ଗଙ୍ଗଦେବଙ୍କ ଶାସନ କାଳରେ ସେ, ଗରୁଡ଼ ମନ୍ଦିର ପ୍ରତି ସ୍ୱତନ୍ତ୍ର ଦୃଷ୍ଟି ନିକ୍ଷେପ କରିଥିଲେ ଓ ତାଙ୍କ ରାଣୀ ଚନ୍ଦ୍ରଲେଖାଙ୍କ ଯୋଗୁଁ ଏଠାରେ ମନ୍ଦିର ନିର୍ମାଣ, ମେଘନାଦ ପାଚେରୀ ନିର୍ମାଣ, ବିଷ୍ଣୁ ମନ୍ଦିର ପ୍ରତିଷ୍ଠା ପ୍ରଭୃତି ସମ୍ଭବ ହୋଇଥିଲା । ଏପରି ପାତାଳ ସମ୍ଭୁତ ଗରୁଡ଼ ବିରଳ । ସ୍ତମ୍ଭର ଉଚ୍ଚତା ପ୍ରାୟ ୧୦ ଫୁଟ୍ ଓ ଗୋଟିଏ ପଥରରେ ନିର୍ମିତ । ପୁରୀ ପ୍ରଭୃତି ଯେତେ ଯେତେ ବିଷ୍ଣୁକ୍ଷେତ୍ର ଅଛି, ସେଠାରେ ଗରୁଡ଼ ସ୍ଥାପିତ କିନ୍ତୁ ଏଠାରେ ଗରୁଡ଼ ଆର୍ବିଭୁତ ।

ଏ ପ୍ରସଙ୍ଗ ଉତ୍‌ଥାନର ତାତ୍ପର୍ଯ୍ୟ ଏହି ଯେ ଚଳିତ ବର୍ଷ (୧୯୯୬ ମସିହା) ଏପ୍ରିଲ ୩ୟ ସପ୍ତାହରେ ନବକଳେବର ପାଇଁ ସ୍ଥାନୀୟ ରାମକୃଷ୍ଣପୁରରୁ ବଡ଼ଠାକୁରଙ୍କ ଦାରୁର ସନ୍ଧାନ ମିଳିଲା । ସେଠାରେ ଥାଆନ୍ତି ଦଇତାପତି ଓ ରାଜଗୁରୁ ଗଣ । ଗରୁଡ଼ ଠାକୁର ପୁରୀ ଶ୍ରୀମନ୍ଦିର ସହ ସମ୍ପୃକ୍ତ ବୋଲି ଜଣାଇ ଦେବାକୁ ଇଚ୍ଛା କରି ସ୍ଥାନୀୟ ଉଦ୍ୟକ୍ତା ବନ୍ଧୁ ଶ୍ରୀ ସୁନାକର ବେହୁରା ଓ ପୂର୍ବତନ ସରପଞ୍ଚ ତଥା ପିତୃ ତୁଲ୍ୟ ଶ୍ରୀ ନିକୁଞ୍ଜ ବିହାରୀ ବିଶ୍ୱାଳ, କଟକ ଜିଲ୍ଲା ମୁଖ୍ୟ ସଂଗଠକ ଶ୍ରୀ ଦୁଃଶାସନ ଲେଙ୍କାଙ୍କ ସହ ମୁଁ ଯାଏ ଦଇତାପତି ଓ ରାଜଗୁରୁଙ୍କୁ ଭେଟିବାପାଇଁ । ଗରୁଡ଼ଙ୍କ ଇତ୍ତି ବୃତ୍ତି ବର୍ଣ୍ଣନା କରିବାପରେ ଉତ୍ସାହିତ ହୁଅନ୍ତି ଦେବକର୍ମଚାରୀଗଣ । ଇତ୍ତି ମଧ୍ୟରେ ଦାରୁ ଛେଦନ ସମୟରେ ବହୁ ନାଗ ଦାରୁ ମୂଳରୁ ବାହାରି ଭୟଭୀତ କରିବାକୁ ଲାଗିଲେ । ଭୟତ୍ରସ୍ତ ଦେବକର୍ମଚାରୀ ଗରୁଡ଼ ମହାପ୍ରଭୁଙ୍କ ଶରଣାପର୍ଣ୍ଣ ହେବାକୁ ଇଚ୍ଛା ପ୍ରକାଶ କରି ମନ୍ଦିର ପରିଦର୍ଶନ କରିବାକୁ ଆସନ୍ତି । ବିଧିର ବିଡମ୍ବନା, ସେହିମାସ (ଏପ୍ରିଲ) ୨୫ ତାରିଖରେ ସେମାନେ ଆସନ୍ତି ମନ୍ଦିରକୁ । ମନ୍ଦିର ଉପକଣ୍ଠରେ ଆଶ୍ଚର୍ଯ୍ୟକର ଦୃଶ୍ୟ । ହଠାତ୍ ଶ୍ରୀଫଳ ଖସିଲା ନାରୀକେଳ ଗଛରୁ । ତାକୁ ନେଇ ସେମାନେ ଠାକୁରଙ୍କ ପାଖରେ ବସାଇ ସଂକଳ୍ପ କଲେ ଗରୁଡ଼ଙ୍କ ଐତିହକୁ ପୁନର୍ଜୀବିତ କରିବାକୁ । ସେହି ମର୍ମରେ ସଂକଳ୍ପ କଲେ ଚଳିତ ବର୍ଷ ଗରୁଡ଼ ଦ୍ୱାଦଶୀ ତିଥିରେ ବଡ଼ ଧରଣର ଯଜ୍ଞ କରିବାକୁ । ଆମ୍ଭେମାନେ ସହଯୋଗ କରିବାକୁ ସଂକଳ୍ପ କଲୁ ।

ଏହି ବିରାଟ ଐତିହ୍ୟର ପରିପ୍ରକାଶ କରିବା ନିମିତ୍ତ ମୁଁ ସଂକଳ୍ପ ନିଏ ଗରୁଡ଼ଙ୍କ ସଂପର୍କରେ ଏକ ପୁସ୍ତିକା ପ୍ରକାଶନ ପାଇଁ । କିନ୍ତୁ ଏ ଦିଗରେ ମୋର ଜ୍ଞାନ ସୀମାବଦ୍ଧ । ମାତ୍ର ଭଗବାନଙ୍କ ଅପାର କରୁଣାରୁ ସାହସ ଓ ଶକ୍ତି ସଞ୍ଚାର ହୁଏ । ଦୀର୍ଘ ଦିନ ଧରି ସମ୍ବାଦ ସରବରାହ ସଂସ୍ଥାମାନଙ୍କରେ କାମ କରି ମନବଳ ବଢ଼ିଯାଇଥାଏ । କିନ୍ତୁ ଗରୁଡ଼ଙ୍କ ଜନ୍ମ ବୃତ୍ତାନ୍ତ ସଂପର୍କରେ ପୁରାଣରେ ଏ ଅବଧି କୌଣସି ପ୍ରାମାଣିକତା ପ୍ରକାଶିତ ହୋଇନଥିବା ଜାଣିଲି । ମହାଭାରତ ଆଦ୍ୟ ପର୍ବରେ ଗରୁଡ଼ଙ୍କ ଜନ୍ମ ବୃତ୍ତାନ୍ତ ଲିପିବଦ୍ଧ ଅଛି ଜାଣିଲି ।

ମହାଭାରତ, ରାମାୟଣ ବା କୌଣସି ପୁରାଣର ବିଷୟବସ୍ତୁ ବେଳେ ବେଳେ ଅତିରଞ୍ଜିତ, ଅସମ୍ଭବ ବୋଲି ପ୍ରତୀୟମାନ ହୋଇଥିଲେ ମଧ୍ୟ ଯେହେତୁ ଏଗୁଡ଼ିକ ଅତି ପ୍ରାଚୀନ ଏବଂ ମୁନି ଋଷିଙ୍କ କୃତ, ସେହି ଦୃଷ୍ଟିରୁ ଆମ୍ଭେ ଏହିସବୁକୁ ସତ୍ୟର ମାନ୍ୟତା ଦେଇଥାଉ ।

ମହାଭାରତର କେତେକ ତଥ୍ୟକୁ ଆଧାର କରି ସୀମିତ ଜ୍ଞାନ ମଧ୍ୟରେ ଦୁଃସାହାସିକ ଲେଖାକୁ ଦେଖାଏ ମୋର ଅଗ୍ରଜକଳ୍ପ ପଣ୍ଡିତ ପ୍ରବୋଧ କୁମାର ମିଶ୍ରଙ୍କୁ । ପଣ୍ଡିତଜୀଙ୍କ ସଂସ୍କୃତ ସାହିତ୍ୟରେ ବହୁ ସୁନାମ । ବନ୍ଧୁ ଭାବରେ "ମାତୃଭୂମି"ରେ ଏକାଠି ଆନ୍ତରିକତା ସହ କାମ କରିଥିଲୁ । ଆମ ଭିତରେ ବନ୍ଧୁତା ନିବିଡ଼ । ସେ ମତେ କାମ ଶିଖାଇଛନ୍ତି ଓ ଲେଖିବା ଶୈଳୀ ବତାଇଛନ୍ତି । ମାତ୍ର କୌଣସି ଧର୍ମ ସମ୍ବନ୍ଧୀୟ ଲେଖା ଲେଖିବା ମୋ ଜୀବନରେ ପ୍ରଥମ । ତଥାପି ଧର୍ମ, ଆଧାତ୍ମିକ ବାଦୀ ବିଚାର କ୍ଷେତ୍ରରେ ଜଣଙ୍କର ପବିତ୍ର ଅନ୍ତଃ କରଣହିଁ ବଡ଼ସହାୟକ । ସେ ଦୃଷ୍ଟିରୁ ମୋର ବିଚାର ଭଙ୍ଗୀରେ ଯାହା ସମୀଚୀନ ଓ ସଙ୍ଗତ, ସେ ସବୁକୁ ସ୍ଥାନ ଦେବାର ପ୍ରୟାସ କରିଛି । ନୀଳାଚଳ ବାସୀ ଅଗ୍ରଜ ବଳଦେବଙ୍କ ପବିତ୍ର ଦାରୁ ସନ୍ଧାନ ପର୍ବ ପରେ ରାମକୃଷ୍ଣପୁର ଗ୍ରାମ ସମେତ ଏଅଞ୍ଚଳ ଦିବ୍ୟ - ଚିନ୍ତା - ଚେତନାରେ ନୂତନ ରୂପ ଧାରଣ କରିଛି ଓ ମୋ ମନରେ ଅପୂର୍ବ ଭକ୍ତିଭାବନା ଜାଗ୍ରତ ହୋଇଛି । ଏହି ଭକ୍ତି ଭାବନାହିଁ ଏହି ଲେଖାକୁ ଆଗେଇ ନେଇଛି ମାତ୍ର । ଲେଖାରେ କିଛି ବ୍ୟତିକ୍ରମ ଥିବ ନିଶ୍ଚୟ । ସେଥିଲାଗି ପାଠକମାନଙ୍କ ନିକଟରେ କ୍ଷମା ମାଗିବା ସଙ୍ଗେ ସଙ୍ଗେ ସେମାନଙ୍କ ପରାମର୍ଶକୁ ଆଗାମୀ ଦିନପାଇଁ ପାଥେୟ କରିବି ।

ତାରିଖ : ୨୧।୧୧।୧୯୯୬

**ବିନୀତ ଜଗବନ୍ଧୁ ପ୍ରଧାନ**
ଓଡ଼ାସିଂହ, (ସାଲେପୁର) କଟକ

## ସୃଷ୍ଟିର ସୃଷ୍ଟି ପ୍ରସଙ୍ଗ

ସୃଷ୍ଟିର ସୃଷ୍ଟି ସମ୍ପର୍କରେ ଆମ ପ୍ରାଚୀନ ଗ୍ରନ୍ଥ ବେଦ, ସ୍ମୃତି ଓ ମହାଭାରତରେ ବିଷଦ ଭାବେ ବର୍ଣ୍ଣି ହୋଇଅଛି । ଆନୁମାନିକ ଖ୍ରୀଷ୍ଟ ପୂର୍ବ ୧୪୦୦ବର୍ଷରେ ମହାଭାରତ ରଚିତ ହୋଇଥିଲା । ବ୍ୟାସଦେବଙ୍କ କୃତ ମହାଭାରତ ବିଶ୍ୱସାହିତ୍ୟରେ ଏକ ଅମ୍ଲାନ କୀର୍ତ୍ତି । ଯୁଗ ଯୁଗଧରି ଜନସାଧାରଣଙ୍କ ଉପରେ ଏହାର ଅଖଣ୍ଡ ପ୍ରଭାବ ରହିଛି ।

ବ୍ୟାସଦେବ ଦୀର୍ଘସାଧନାକରି ମହାଭାରତ ଗ୍ରନ୍ଥ ରଚନା କରିଥିଲେ । ଏହା ବୋଧହୁଏ ରାଉରକେଲା (ବେଦବ୍ୟାସ)ଠାରେ ରଚିତ ହୋଇଥିଲା । ଏହି ଗ୍ରନ୍ଥ ଏପରି ବିଶାଳ ଥିଲା ଯେ ଏହାର ରଚନା ଅତି କଷ୍ଟ ସାଧ୍ୟଥିଲା । ବ୍ୟାସଦେବ ଚାହୁଁଥିଲେ ଜଣେ ପଣ୍ଡିତ, ବୁଦ୍ଧିମାନ୍ ଲୋକ ଯଦି ମିଳନ୍ତେ, ତେବେ ସେ ମହାଭାରତର ଶ୍ଳୋକ ଗୁଡ଼ିକୁ ଡାକିଲେ ସେ ନିର୍ଭୁଲ ଭାବରେ ଲେଖିଯାଆନ୍ତେ । ଏଥିପାଇଁ ସେ ବ୍ରହ୍ମାଙ୍କୁ ସ୍ମରଣ କଲେ । ବ୍ରହ୍ମା ବ୍ୟାସଙ୍କ ମନ ଅଭିଳାଷ ଓ ମହାଭାରତ କଥାଶୁଣି ଖୁବ ଖୁସିହୋଇଗଲେ । ବ୍ରହ୍ମା ବ୍ୟାସଙ୍କୁ କହିଲେ ଯେ ତୁମ ଗ୍ରନ୍ଥ ଲେଖିବା ପାଇଁ ସଂସାରରେ ଜଣେ ବିଦ୍ୱାନ୍ ଅଛନ୍ତି । ସେ ହେଉଛନ୍ତି ଗଣେଶ । ତୁମେ ତାଙ୍କୁ ଅନୁରୋଧ କର । ସେ ନିଶ୍ଚୟ ଅନୁରୋଧ ରକ୍ଷାକରିବେ । ବ୍ୟାସ ଗଣେଶଙ୍କୁ ସ୍ମରଣ କଲେ । ଗଣେଶ ବ୍ୟାସଙ୍କ ନିକଟରେ ପହଞ୍ଚିଲେ । ବ୍ୟାସ କହିଲେ ହେ ବିନାୟକ ! ସଂସାରର କଲ୍ୟାଣ ପାଇଁ ମୁଁ ଏକ ବିଶାଳ ଗ୍ରନ୍ଥ ମହାଭାରତ ରଚନା କରୁଛି । କିନ୍ତୁ ଆପଣଙ୍କ ଛଡ଼ା ଏହି ଗ୍ରନ୍ଥଟିକୁ କେହି ନିର୍ଭୁଲ ଭାବରେ ଲେଖି ପାରିବେନାହିଁ । ମୁଁ ଶ୍ଳୋକ ରଚନା କରି ବୋଲିଯିବି । ଆପଣ ଲେଖିଯିବେ । ଗଣେଶ କହିଲେ ମହାଭାରତ ଲେଖିବା ପାଇଁ ମୋର ଆପତ୍ତି ନାହିଁ । କିନ୍ତୁ ଗୋଟିଏ ସର୍ତ୍ତ ଥରେ ଆରମ୍ଭ କଲେ ମୋର ଲେଖନୀ ମୁହୂର୍ତ୍ତକ ପାଇଁ ବନ୍ଦ ହେବନାହିଁ । ଏଣୁ ଅନର୍ଗଳ ଡାକିବାକୁ ପଡ଼ିବ । ଏଥିରେ ବ୍ୟାସଦେବ ରାଜିହୋଇ ସେ ମଧ ଏକ ପାଲଟା ସର୍ତ୍ତ ଆରୋପ କଲେ । ସେ ସର୍ତ୍ତଟିହେଲା ଆପଣ ଲେଖିଲା ବେଳେ କିଛି ନବୁଝି ଲେଖିବେ ନାହିଁ । ଗଣେଷ ମାନିଗଲେ । ମହାଭାରତ ଲେଖାହେଲା ।

**ମହାଭାରତ ଅନୁସାରେ :-**

ଏ ଜଗତ ଯେତେବେଳେ ପ୍ରଳୟ ପ୍ରୟୋଧି ଜଳରେ ବୁଡ଼ି ରହିଥିଲା, ସେ ସମୟରେ ସୂର୍ଯ୍ୟ, ଚନ୍ଦ୍ର, ତାରା, ପ୍ରଭୃତିର ଆଲୋକ ନଥିଲା । ସବୁଆଡ଼େ ଘୋର ଅନ୍ଧକାର ଥିଲା ଓ ଜଳ ମଧ୍ୟରେ ଗୋଟିଏ ବୃହତ୍ ଅଣ୍ଡା ଜାତ ହେଲା । ଏହି ଅଣ୍ଡାଟି ହେଲା ସନାତନ ବ୍ରହ୍ମ । ସେଥିରୁ ଜନ୍ମ ନେଲେ ପିତାମହ ବ୍ରହ୍ମା ଏବଂ ପରେ ପରେ ବିଷ୍ଣୁ ଓ ଶିବ ଜନ୍ମ ଲାଭ କଲେ । ତାଙ୍କ ଠାରୁ ବହୁ ବ୍ରହ୍ମର୍ଷି, ରାଜର୍ଷି ଜନ୍ମ ଲାଭ କଲେ । କ୍ରମେ କ୍ରମେ ଜଳ, ପବନ ଓ ଆକାଶ, ଦିଗ, ଋତୁ, ମାସ, ଦିବା, ରାତି ସୃଷ୍ଟି ହେଲା । ଏହା ପରେ ପରେ ଦେବଗଣ ସୃଷ୍ଟି ହେଲା । କାଳକ୍ରମେ ଅନ୍ୟାନ୍ୟ ଜୀବ ଜନ୍ତୁ ଓ କୀଟ ପତଙ୍ଗ ସୃଷ୍ଟି ହେଲା । ଏହି ସୃଷ୍ଟି ସମ୍ବନ୍ଧରେ ଓଡ଼ିଆ କବି ଜୟଦେବ ତାଙ୍କ ରଚିତ ପ୍ରସିଦ୍ଧ ଗୀତଗୋବିନ୍ଦରେ ବର୍ଣ୍ଣନା କରିଛନ୍ତି :

ପ୍ରଳୟ ପ୍ରୟୋଧି ଜଳେ ଧୃତ ବାନସିବେଦଂ
ବିହିତବ ହିତ୍ରଚରିତ ମଖେଦଂ
କେଶବ ଧୃତ : ମୀନ ଶରୀର, ଜୟ ଜଗଦୀଶ ହରେ ।
କ୍ଷିତରତି ବିପୁଳତରେ ତବ ତିଷ୍ଠତି ପୃଷ୍ଠେ
ଧରଣି ଧରଣକିଣ ଚକ୍ର ଗରିଷ୍ଠେ
କେଶବ ଧୃତ : କଚ୍ଛପ ରୂପ ଜୟ ଜଗଦୀଶ ହରେ(୨)
ବସତି ଦଶନ-ଶିଖରେ ଧରଣୀ ତବ ଲଗ୍ନା
ଶଶି ନିକଳଙ୍କ-କଳେବନିମଗ୍ନା,
କେଶବ ଧୃତ : ଶୂକର ରୂପ, ଜୟ ଜଗଦୀଶ ହରେ(୩)
ତବ କର କମଳକରେ ନଖ ମଦ୍ଭୁତ ଶୃଙ୍ଗଂ
ଦଳିତ ହିରଣ୍ୟକ ଶିପୁତନୁ ଭୃଙ୍ଗଂ
କେଶବ ଧୃତ : ନରହରି ରୂପ, ଜୟ ଜଗଦୀଶ ହରେ (୪)
ଛଳୟସି ବିକ୍ରମଣେ ବଳି ମଦ୍ଭୁତ ବାମନଂ
ପଦ ନଖନୀର ଜନିତ ଜନ ପାବନଂ
କେଶବ ଧୃତ : ବାମନ ରୂପ ଜୟ ଜଗଦୀଶ ହରେ (୫)
କ୍ଷତ୍ରିୟ ରୁଧିରମୟେ ଜଗଦପଗତପାପଂ
ସ୍ନପୟସି ପୟସି ଶମିତ ଭବତାପଂ

କେଶବ ଧୃତ : ଭୃଗୁପତି ରୂପ ଜୟ ଜଗଦୀଶ ହରେ (୬)
ବିତରସି ଦିକ୍ଷୁରଣେ ଦିକ୍ ପତିକମନୀୟଂ
ଦଶ ମୁଖ ମୌଳି ବଳିଂ ରମଣୀୟଂ
କେଶବ ଧୃତ : ରାମ ଶରୀର ଜୟ ଜଗଦୀଶ ହରେ
ବହସି ବପୁସି ବସନଂ ଜଳଜାଭଂ
ହଳହତି ଭୀତି ମିଳିତ ଯମୁନାଭଂ
କେଶବ ଧୃତ ହଳଧର ରୂପ, ଜୟ ଜଗଦୀଶ ହରେ (୮)
ନିନ୍ଦସି ଯଜ୍ଞ ବିଧେରହହ ଶ୍ରୁତିଜାତଂ
ସଦୟ-ହୃଦୟ ଦର୍ଶିତ-ପଶୁଘାତଂ
କେଶବ ଧୃତ : ବୁଦ୍ଧ ଶରୀର, ଜୟ ଜଗଦୀଶ ହରେ (୯)
ମ୍ଳେଚ୍ଛ ନିବହନିଧନେ କଳୟସି କରବାଳଂ
ଧୂମକେତୁମିବ କିମପିକରାଳଂ
କେଶବ ଧୃତ : କଲ୍କି-ଶରୀର ଜୟ ଜଗଦୀଶ ହରେ (୧୦)

ଏହି ଦଶାବତାର ଧାରା ଭିତରେ ସାମୟିକ ଭାବେ ସୃଷ୍ଟି ପ୍ରକ୍ରିୟାର କ୍ରମବିକାଶ ବର୍ଣ୍ଣିତ ହୋଇଛି । ଏହି ଶ୍ଳୋକ ଗୁଡ଼ିକର ତାତ୍ପର୍ଯ୍ୟ ହେଲା, ସାରା ବିଶ୍ୱ ପ୍ରଳୟପ୍ରୟୋଧି ଜଳେ ବୁଡ଼ି ରହିଥିଲା ଓ ଭଗବାନ ମାଛ ରୂପରେ ପ୍ରଥମେ ଜନ୍ମ ଲାଭ କଲେ । ପରେ କଚ୍ଛପ ରୂପ ଧାରଣ କଲେ । କ୍ରମେ ସ୍ଥଳ ଭାଗ ସୃଷ୍ଟି ହେଲା । ପରେ ଭଗବାନ ଶୂକର ରୂପ (ପଶୁ) ଓ ପରେ ଅଧା ପଶୁ-ଅଧା ମନୁଷ୍ୟ(ନର ଓ ସିଂହ) ନରସିଂହ ରୂପ ଓ ପରେ ଗେଡ଼ା ମଣିଷ (ବାମନ) ପରବର୍ତ୍ତୀ ଅବସ୍ଥାରେ ବଞ୍ଚି ରହିବା ପାଇଁ ସଂଗ୍ରାମୀ ମନୁଷ୍ୟ ଭୃଗୁପତି (ପର୍ଶୁରାମ) ଶରୀର ଧାରଣ କଲେ । କାଳକ୍ରମେ ସଂଗ୍ରାମୀ ମଣିଷରୁ ବିବେକୀ ମଣିଷ (ରାମ) ଅବତାର ଓ ପରିଶ୍ରମୀ ମଣିଷ (ହଳଧର ରୂପ), ଧାର୍ମିକ ମଣିଷ (ବୁଦ୍ଧ ଅବତାର) ଓ ପରିଶେଷରେ ଅନ୍ୟାୟ ବିରୁଦ୍ଧରେ ସଂଗ୍ରାମ ଭୂମିକାରେ (କଲ୍କୀ ଅବତାର) ।

**ଗରୁଡ଼ ପୁରାଣ ଅନୁସାରେ :**

କଳି ଆଗମନ ଦେଖି ଦିନେ ଋଷିମାନେ ଏକତ୍ରିତ ହୋଇ ନୈମିଷା ଅରଣ୍ୟରେ କଳି କଲ୍ମଷ ନାଶ ଯଜ୍ଞ ଆରମ୍ଭ କଲେ । ବ୍ୟାସ ଦେବଙ୍କ ଶିଷ୍ୟ ସୂତମୁନି

ସେହି ସ୍ଥାନରେ ପ୍ରବେଶ କଲାକ୍ଷଣି ଋଷିମାନେ ପୁରାଣ ସମ୍ବନ୍ଧୀୟ ପ୍ରବଚନ ଦେବାକୁ ବିନୀତ ଅନୁରୋଧ କଲେ । ସେହି ଅନୁସାରେ ବ୍ୟାସ ଦେବଙ୍କ କୃତ ଗରୁଡ଼ ପୁରାଣରୁ ସୂତମୁନି କହିଲେ ଯେ ଦିନେ ବୈକୁଣ୍ଠ ପୁରରେ ବିଷ୍ଣୁଙ୍କ ଛାମୁରେ ଉଭା ହୋଇ ଗରୁଡ଼ ସୃଷ୍ଟି ପ୍ରସଙ୍ଗରେ ଜାଣିବାକୁ ଅନୁରୋଧ କଲେ । ବିଷ୍ଣୁ ଗରୁଡ଼ଙ୍କ କାକୁତି ମିନତିରେ ସନ୍ତୁଷ୍ଟ ହୋଇ ସୃଷ୍ଟି ସମ୍ବନ୍ଧରେ କହିଲେ ଯେ, ପ୍ରଭୁ କଳ୍ପ ପୂର୍ବରୁ ପୃଥିବୀ ପୃଷ୍ଠରେ ହୟଗ୍ରୀବ ଅବତାର ହୋଇଥିଲେ । ସେହି ସମୟରେ ମହାପ୍ରଳୟ ହୋଇଥାଏ । ଅନନ୍ତ ଶଯ୍ୟାରେ ପ୍ରଭୁ ଶୟନ କରିଥାନ୍ତି । ପ୍ରଳୟର ଶେଷ ପର୍ବ । ସେହି ସମୟରେ ଜନ୍ମ ନିଏ ଭୟଙ୍କର ରାକ୍ଷାସ । ଦିନେ ସେ ଦେଖିଲା ଯେ, ଦେବୀ ସରସ୍ୱତୀ ବିଷ୍ଣୁଙ୍କପାଦ ଧିରେ ଧିରେ ମଣ୍ଡାଳୁ ଥାନ୍ତି । ତାଙ୍କର ଅପରୂପ ସୌନ୍ଦର୍ଯ୍ୟରେ ବିମୋହିତ ହୋଇ ରାକ୍ଷାସଟି ତାଙ୍କୁ ବଳାତ୍କାର କରିବାକୁ ଗୋଡ଼ାଇଲା । ବିଷ୍ଣୁଙ୍କୁ ନିଦ ହୋଇଯାଇଥାଏ । ଦେବୀ ସରସ୍ୱତୀ କିଂକର୍ତ୍ତବ୍ୟ ବିମୂଢ଼ା ହୋଇ କପଟ କଲେ । ମଧୁର ବଚନରେ କହିଲେ ଯେ ମୋର ସ୍ୱାମୀ ନିଦ୍ରାଗତ । ସ୍ୱାମୀ ଥାଉଁ ଥାଉଁ ତୁମ ସଙ୍ଗେ କିପରି ରମଣ କରିବି ? ଯଦି ତୁମେ ମୋ ସ୍ୱାମୀଙ୍କୁ ଜୀବନରେ ମାରି ଦେବ ତେବେ ତୁମେ ମୋତେ ରମଣ କରିବ । ଏହା ଶୁଣି ଦୈତ୍ୟ ଆନନ୍ଦିତ ହୋଇ ଗଦାରେ ବିଷ୍ଣୁଙ୍କୁ ପ୍ରହାର କଲା । ବିଷ୍ଣୁଙ୍କ ନିଦ୍ରାଭାଙ୍ଗିବା କ୍ଷଣି ଉଭୟଙ୍କ ମଧ୍ୟରେ ଯୁଦ୍ଧ ହେଲା । ଯେତେବେଳେ ଦୈତ୍ୟ ଜାଣି ପାରିଲା ଯେ ସ୍ୱୟଂ ବ୍ରହ୍ମାଣ୍ଡ ପତିଙ୍କ ସହ ସେ ଯୁଦ୍ଧ କରୁଛି, ତା'ର ଚେତନା ଉଦ୍ରେକ ହେଲା । ନିଜ ଭୂଲ୍ ପାଇଁ ଅନୁତାପ କଲା ଓ କ୍ଷମା ମାଗିଲା । ବ୍ରହ୍ମାଣ୍ଡ ପତି ତାର କାକୁତି ମିନତିରେ ଦୟା ପ୍ରକଟ କଲେ ଓ କହିଲେ ଯେ, ତୁ ଲକ୍ଷେ କୋଟି ଯୋଜନ କାୟା ବିସ୍ତାର କର । ସେ କାୟା ବିସ୍ତାର କଲାରୁ ତାଙ୍କ ଚକ୍ର ସାହାଯ୍ୟରେ ତାର ମୁଣ୍ଡ ଗଣ୍ଡି ଅଲଗା କରିଦେଲେ ଓ ମେଦ ଆକାଶରେ ଅସ୍ଥି ସହିତ ମର୍ଦ୍ଦନ କରି ସେହି ମେଦକୁ ପ୍ରଳୟ ଜଳରେ ସ୍ଥାପନ କଲେ । ସେହି ଦିନ ଠାରୁ ଏହି ମେଦିନୀର ସୃଷ୍ଟି ହେଲା । ମେଦିନୀ ହେଲା ପରେ ତ୍ରୈଲୋକ୍ୟ ଗୋସାଇଁ ତ୍ରୈଲୋକ୍ୟ ସୃଷ୍ଟି କରିବା ପାଇଁ ମନସ୍ଥ କଲେ । ଏହି ସମୟରେ ଆଦିମାତା ମୋହିନୀ ରୂପରେ ନାରାୟଣଙ୍କ ପାଖରେ ଆବିର୍ଭୂତା ହେଲେ । ନାରାୟଣଙ୍କ ସହ ତାଙ୍କର ରତିକ୍ରିୟା ଯୋଗୁଁ ବ୍ରହ୍ମବିନ୍ଦୁ ନିର୍ଗତ ହେଲା ଓ ସେ ବିନ୍ଦୁକୁ ଆଦିମାତା ଧାରଣ କରି ନ ପାରିବାରୁ ପ୍ରଳୟ ଜଳରେ ବହିଗଲା ଓ ସେହି ବିନ୍ଦୁରୁ ଜନ୍ମ ନେଲା ଓଁକାର । ଓଁକାରରୁ ବିଜତ୍ରୟ ଜନ୍ମନେଲେ । ସେହି ବିଜତ୍ରୟ ହେଲେ, ହ୍ଲୀଂ, କ୍ଲୀଂ, ଶ୍ଲୀଂ । ଏହାଙ୍କୁ ବ୍ରହ୍ମା, ବିଷ୍ଣୁ ଓ ମହେଶ୍ୱର କୁହାଯାଏ । ପ୍ରଥମେ ତ୍ରୈଲୋକ୍ୟ ଗୋସାଇଁ ବ୍ରହ୍ମାଙ୍କୁ ଦେଖିଲେ ଓ ସୃଷ୍ଟି ସର୍ଜନା ନିମନ୍ତେ ଆଜ୍ଞା ଦେଲେ ।

ତାଙ୍କ ଆଜ୍ଞାରେ ବ୍ରହ୍ମା ପୃଥିବୀ ପୃଷ୍ଠରେ ସର୍ବ ଜୀବଜନ୍ତୁ, ବୃକ୍ଷଲତା, ପର୍ବତ ପ୍ରଭୃତି ସୃଷ୍ଟି କଲେ । ଏମାନଙ୍କୁ ଆନନ୍ଦରେ ପାଳନ କରିବାକୁ ବିଷ୍ଣୁଙ୍କୁ ନିର୍ଦ୍ଦେଶ ଦେଲେ । ଶିବଙ୍କୁ ଚାହିଁ ସେ ପରମବ୍ରହ୍ମ ବୋଲି କହି ନିର୍ଦ୍ଦେଶ ଦେଲେ ଯେ ଧରା ପୃଷ୍ଠରେ ପାପ ଭାର ଅଧିକ ହୋଇଗଲେ, ପାପୀମାନଙ୍କୁ ତୁମେ ସଂହାର କରିବ । ସୃଷ୍ଟି ତତ୍ତ୍ୱ ସଂପର୍କରେ ଏହା ଉଲ୍ଲେଖ ରହିଛି ।

**ପୁରାବିଦ୍ ମାନଙ୍କ ମତରେ :-**

ଆଜିକାର ଐତିହାସିକ ମାନେ ବିଶ୍ୱର ସୃଷ୍ଟି ଓ ସ୍ଥିତି ସମ୍ପର୍କରେ ତାଙ୍କର ବହୁ ଚିନ୍ତାଶକ୍ତି ପ୍ରୟୋଗ କରିଆସିଛନ୍ତି । ପୃଥିବୀର ପ୍ରାୟ ଅଧିକାଂଶ ପ୍ରାଚୀନ ଧର୍ମ ଗ୍ରନ୍ଥରେ ସୃଷ୍ଟିର ରହସ୍ୟ ସମ୍ପର୍କରେ ନାନା ବିବରଣୀ ଦେଖିବାକୁ ମିଳେ । ଭାରତରେ ବୈଦିକ ଋଷିମାନେ ସେମାନଙ୍କର ଅସାଧାରଣ ଚିନ୍ତାଶକ୍ତି ଦ୍ୱାରା ଜାଣିପାରିଲେ ଯେ, ଅନନ୍ତ, ଅସୀମ, ନିରାକାର ସତ୍ତାହୀନ ମହାଶୂନ୍ୟ ମଧ୍ୟରେ ଦିନେ ସୃଷ୍ଟିର ପ୍ରଥମ କିରଣ ଆତ୍ମ ପ୍ରକାଶ କଲା ।

ମହାଶୂନ୍ୟ ମଧ୍ୟରେ କେବେ ଓ କିପରି ସୂର୍ଯ୍ୟର ଆତ୍ମ ପ୍ରକାଶ, ସୌରଜଗତ ବିକାଶ ଓ ପୃଥିବୀର ସୃଷ୍ଟି ସମ୍ଭବ ହେଲା ତାହା ଏବେ ମଧ୍ୟ ଦୁର୍ବୋଧ । ପ୍ରାୟ ଦୁଇଶତକୋଟି ବର୍ଷ ପୂର୍ବେ ସୂର୍ଯ୍ୟର ଅଂଶରୁ ପୃଥିବୀ ବିଚ୍ଛିନ୍ନ ହୋଇ ଏକ ପୃଥକ୍ ଅବସ୍ଥିତିରେ ପରିଣତ ହୋଇଥିଲା । ପୃଥିବୀ ପୃଷ୍ଠରେ ଜୀବନର ଆଭାସ କେବେ ମିଳିଲା ସେ ସମ୍ପର୍କରେ ନାନା ମୁନିଙ୍କ ନାନା ମତ ମିଳେ ।

ଆନୁମାନିକ ତିରିଶ କୋଟି ବର୍ଷ ପୂର୍ବେ ଭୂ ପୃଷ୍ଠରେ ଜୀବଜଗତ ସୃଷ୍ଟି ହୋଇଥିଲା ବୋଲି କେହି କେହି ମତଦେଇଥାନ୍ତି । ପ୍ରାୟ ଏକ ନିୟୁତ ବର୍ଷ ପୂର୍ବେ ପୃଥିବୀ ପୃଷ୍ଠରେ ତୁଷାର ଯୁଗ ଆରମ୍ଭ ହୋଇଥିଲା ବୋଲି କୁହାଯାଏ । ସେହି ତୁଷାର ଯୁଗର କୌଣସି ଏକ ସମୟରେ ମନୁଷ୍ୟ ଜାତି ଉତ୍ପତ୍ତି ଲାଭ କରିଥିଲା । ଦୀର୍ଘ ସମୟ ରାଶି ମଧ୍ୟରେ ବିବର୍ତ୍ତନ ଗତିରେ ଅନୁନ୍ନତ ସ୍ତନ୍ୟପାୟୀ ମାନଙ୍କ ମଧ୍ୟରେ ବାନର ଜାତୀୟ ଜୀବ ଏବଂ ପରେ ଅପୂର୍ଣ୍ଣାଙ୍ଗ ମନୁଷ୍ୟ ଏବଂ ପରେ ପ୍ରକୃତ ମନୁଷ୍ୟର ଆବିର୍ଭାବ

ହେଲା । ପୃଥିବୀର ବିଭିନ୍ନ ସ୍ଥାନରୁ ଆବିଷ୍କୃତ ହୋଇଥିବା କଙ୍କାଳ ମାନଙ୍କରୁ ବିବର୍ତ୍ତନ ବିଷୟ ଜଣାପଡ଼େ ।

ପ୍ରାୟ ପଚିଶ ହଜାର ବର୍ଷ ପୂର୍ବେ ଦକ୍ଷିଣ ଏସିଆ କିମ୍ବା ଉତ୍ତର ଆଫ୍ରିକା ଅଞ୍ଚଳରେ ଏକ ନୂତନ ଜାତୀୟ ମନୁଷ୍ୟ ମାନଙ୍କର ଆବିର୍ଭାବ ହୋଇଥିଲା । ସେତେବେଳେ ତୁଷାରାଚ୍ଛନ୍ନ ଅଞ୍ଚଳମାନ କ୍ରମେ ପରିଷ୍କାର ହୋଇ ଆସୁଥାଏ । ନାନା ପ୍ରକାର ଉଦ୍ଭିଦ ଉତ୍ପତ୍ତି ଓ ଜୀବଜନ୍ତୁର ଉତ୍ପତ୍ତି ଆରମ୍ଭ ହୁଏ । ଜାତି ତତ୍ତ୍ୱବିତ୍‌ଙ୍କ ମତରେ ଆମ୍ଭେମାନେ ଏହି ଆଦିମ ମନୁଷ୍ୟର ବଂଶଧର । ଏକ ଉନ୍ନତ ମାନବ ସଭ୍ୟତାର ବିକାଶ ଦିଗରେ ଅନୁକୂଳ ପରିବେଶ ସୃଷ୍ଟି ହେଲା । ଧର୍ମ ଭାବନା ସୃଷ୍ଟି ହେଲା । ଦେବାଦେବୀ ମନ୍ଦିର ପ୍ରଭୃତି ନିର୍ମାଣ ଓ ପ୍ରତିଷ୍ଠା କ୍ଷେତ୍ରରେ ସେମାନେ ଏକ ପ୍ରମୁଖ ଭୂମିକା ଗ୍ରହଣ କଲେ । ବିଶ୍ୱର ବିଭିନ୍ନ ନଦୀ ଅବବାହିକା ସମେତ ଭାରତର ସିନ୍ଧୁ ନଦୀ ଠାରେ ପ୍ରାଚୀନ ସଭ୍ୟତା ଗଢ଼ି ଉଠିଥିଲା । ଏହା ପ୍ରାୟ ଖ୍ରୀ:ପୂ: ୨୫୦୦ ବର୍ଷ ହେବ ।

**ପୌରାଣିକ ଯୁଗ ନିର୍ଣ୍ଣୟ :-**

ପୌରାଣିକ ପ୍ରଥା ଅନୁସାରେ ସୃଷ୍ଟି ଆରମ୍ଭରୁ ଆଜି ପର୍ଯ୍ୟନ୍ତ ସମସ୍ତ ସମୟକୁ ଚାରି ଯୁଗରେ ବିଭକ୍ତ କରାଯାଇଅଛି । ପ୍ରଥମଟି - ସତ୍ୟଯୁଗ । ଏହି ଯୁଗ ସୃଷ୍ଟି ଆରମ୍ଭର ପ୍ରଥମ ଯୁଗ । ସେ ଯୁଗରେ ଲୋକମାନେ ସମସ୍ତେ ନ୍ୟାୟରେ ଚଳି ଆସୁଥିଲେ । ଜୟଦେବଙ୍କ ଗୀତ ଗୋବିନ୍ଦରୁ ସତ୍ୟ ଯୁଗ ନରସିଂହ ଅବତାର ପର୍ଯ୍ୟନ୍ତ ବୋଲି ଜଣାପଡ଼େ । ସତ୍ୟଯୁଗ ଶେଷ ଓ ତ୍ରେତୟା ଯୁଗ ଆରମ୍ଭରେ ଯୁଗ ପୁରୁଷ ଭଗବାନ ବାମନ ରୂପ ଧାରଣ କରି ଧରା ପୃଷ୍ଠରେ ଅବତିର୍ଣ୍ଣ ହେଲେ । ରାମ ଅବତାର ତ୍ରେତୟା ଯୁଗରେ ଓ ଏହା ପରେ ଆରମ୍ଭ ହୁଏ ଭଗବାନଙ୍କର ବଳରାମ ଅବତାର ଦ୍ୱାପର ଯୁଗ । ଭଗବାନ ବୁଦ୍ଧ ଅବତାର କଳି ଯୁଗର ପ୍ରଥମ ଅବସ୍ଥା ଓ ପରେ କଳ୍‌କୀ ଅବତାର ବା ଜଗନ୍ନାଥ ଅବତାର । କେତେକ ମାଳିକା ପ୍ରମାଣ ଅନୁସାରେ ଜଗନ୍ନାଥ ଦାରୁ ବ୍ରହ୍ମ ରୂପରେ କଳ୍‌କୀ ଅବତାର ଧାରଣ କରି ମ୍ଳେଚ୍ଛ ସଂହାର ପୂର୍ବକ ସତ୍ୟ ପ୍ରତିଷ୍ଠା କରନ୍ତି । ଶୁକଦେବ ରାଜା ପରୀକ୍ଷିତଙ୍କୁ କଳି ଯୁଗର ଲକ୍ଷଣ ବିଷୟରେ ବୁଝାଇବାକୁ ଯାଇ

କହିଛନ୍ତି ଯେ, ଘୋର କଳିକାଳ ସମୟରେ ଧର୍ମ, ସତ୍ୟ, ପବିତ୍ରତା, କ୍ଷମା, ଦୟା, ଆୟୁ, ବଳ ଓ ସ୍ମରଣ ଶକ୍ତି ଲୋପ ପାଇବ । ମାନବ ମାନେ ଲୋଭୀ, ପରଶ୍ରୀକାତର ହେବେ । କଳିଯୁଗର ଅନ୍ତିମ ସମୟରେ ମନୁଷ୍ୟ ଗଣ ପରସ୍ପରକୁ ଲୁଣ୍ଠନ ଓ ହତ୍ୟା କରିବେ । ବ୍ରାହ୍ମଣ ମାନେ ବେଦ ଉଚ୍ଚାରଣ କରି ପାରିବେ ନାହିଁ । ପୃଥିବୀ ହୀନବିର୍ଯ୍ୟା, ମାନବ ଗଣ ଓଜଃ-ତେଜରହିତ ଓ ସତ୍ୟଭ୍ରଷ୍ଟ ହେବେ ।

ସନ୍ଥ ତୁଳସୀ ଦାସଙ୍କ ମତରେ ସତ୍ୟ ଯୁଗରେ ଧର୍ମ ସମ୍ପୂର୍ଣ୍ଣ ଚାରି ଭାଗ ଥିଲା । ତ୍ରେତେୟା ଯୁଗରେ ଧର୍ମ ତିନି ଭାଗ, ଦ୍ୱାପର ଯୁଗରେ ଧର୍ମ ଦୁଇ ଭାଗ ଓ କଳିଯୁଗରେ ଧର୍ମ ଏକଭାଗ । ଅର୍ଥାତ୍ କଳିଯୁଗରେ ଅଧର୍ମ ବା ପାପର ଭାର ତିନିଭାଗ ଥିଲାବେଳେ ସତ୍ୟ, ଧର୍ମ, ନ୍ୟାୟ ଅନ୍ୱେଷଣ କରିବା ବଡ଼ କଠିନ ବ୍ୟାପାର ।

**କଳିଯୁଗର ପରମାୟୁ :-**

କଳିଯୁଗ ପରମାୟୁ ସମ୍ପର୍କରେ ମହର୍ଷି ମନୁ ଉଲ୍ଲେଖ କରିଛନ୍ତି ଯେ :

''ଚତୁର୍ଯ୍ୟା ହୁଃ ସହସ୍ରାଣି ବର୍ଷାଣାଂ
ତତ୍ କୃତଂ ଯୁଗମ୍
ସତ୍ୟ ତାବଚ୍ଛତୀ ସନ୍ଧ୍ୟା ସନ୍ଧ୍ୟାଶ୍ଚ,
ତଥାବଧଃ ।

ମହାପୁରୁଷ ହାଡ଼ିଦାସ ତାଙ୍କ କଳି ଚଉତିସାରେ, କଳିଯୁଗର ବୟସ ଚାରିହଜାର ବର୍ଷ ବୋଲି ଉଲ୍ଲେଖ କରିଛନ୍ତି ଓ ଦୁଇ ହଜାର ମସିହା ବେଳକୁ କଳିଯୁଗ ଶେଷ ବୋଲି ଉଲ୍ଲେଖ କରିଛନ୍ତି । ସେଥିରେ ଉଲ୍ଲେଖ ଅଛି ;

ସମ୍ବତ୍ସର ପାଞ୍ଚ ସହସ୍ର କଳି ହୋଇବ ଶେଷ
ସତ୍ୟଯୁଗ ଆଦ୍ୟ ହୋଇବ ଶୁଭ ଯୁଗ ପ୍ରବେଶ

ଇଟାଲୀ, ଜର୍ମାନୀ ଓ ଫ୍ରାନ୍ସର କେତେକ ଭବିଷ୍ୟତ ବକ୍ତା କହିଛନ୍ତି ଯେ ଦୁଇ ହଜାର ମସିହା ବେଳକୁ କଳି ଯୁଗର ପରିବର୍ତ୍ତନ ଘଟିବ । ଏହି ସମୟରେ ବିଶ୍ୱ ଯୁଦ୍ଧ ସଂଗଠିତ ହୋଇ ବହୁଲୋକ କ୍ଷୟ କ୍ଷତି ହେବେ । ହଲାଣ୍ଡର ଜଣେ ଭବିଷ୍ୟତ ବକ୍ତା କହିଛନ୍ତି ଯେ, ଦୁଇ ହଜାର ମସିହା ବେଳକୁ ଭାରତରେ ଜଣେ ବେଦପୁରୁଷ

ଜନ୍ମଲାଭ କରି - ସତ୍ୟର ବାର୍ତ୍ତା ପ୍ରଚାର କରିବେ । ଲୋକମାନେ ଆତଙ୍କରେ ପଡ଼ି ଧର୍ମବାଣୀ ଗ୍ରହଣୀ କରିବେ । ବିଭିନ୍ନ ସ୍ଥାନରେ ଧର୍ମ କାର୍ଯ୍ୟ ବିଶେଷ କରି ବିଶ୍ୱ ଶାନ୍ତି ଯଜ୍ଞାନୁଷ୍ଠାନ କରି ଶାନ୍ତିବାଣୀ ଗ୍ରହଣ ଓ ପ୍ରଚାର କରିବେ । ଦୁଇ ହଜାର ମସିହା ବେଳକୁ ଲୋକମାନଙ୍କ ଚରିତ୍ର ପରିବର୍ତ୍ତନ ଘଟି ଧର୍ମ ଆଡ଼କୁ ମୁହାଁଇବେ । ପଞ୍ଚଦଶ ଶତାବ୍ଦୀର ଭବିଷ୍ୟକାର ସିଦ୍ଧପୁରୁଷ ଅଚ୍ୟୁତାନନ୍ଦ ଦାସ କଳି ଯୁଗର ବର୍ଣ୍ଣନା କରିଛନ୍ତି ଓ ଏହାର ପ୍ରମାଣ ସ୍ୱରୂପ ବର୍ଣ୍ଣନା ସାଙ୍ଗକୁ ଭବିଷ୍ୟତ ବାଣୀ ବୁଝେଇଛନ୍ତି ।

''ଯଥା-'' ତରକିଥିବୁ ତେର'କୁ,
ଚଉଦ-ପନ୍ଦରେ କେହି ନ ରହିବେ, ସତ ଉପୁଜିବ ସତରକୁ'
ସତରରେ ମହାମେରୁ, ଧର୍ମବୁଡ଼ିଯିବ ଫିରିଙ୍ଗିଠାରୁରେ;
ବଳ ଆସିବେ ''ଉତ୍ତରୁ''



ଉତ୍ତର ସାଜିବ, ଦକ୍ଷିଣ ଗାଜିବ, ପୂର୍ବେ ନ ରହିବେ କେହି,
ଝାଡ଼ ମାଡ଼ ସହି କେତେକ ରହିବେ, ଆଗକୁ ବିହନ ସେହି'' ଇତ୍ୟାଦି

- ଏସବୁ ବର୍ଣ୍ଣନାରେ ଠିକ୍ ଠିକ୍ ମଣିଷର ଭବିଷ୍ୟତ ସ୍ୱଭାବ, ପ୍ରକୃତି ଓ ପରିଣାମ ସମ୍ପର୍କରେ ଅଚ୍ୟୁତାନନ୍ଦଙ୍କ ମାଳିକାରେ ବିସ୍ତୃତ ବର୍ଣ୍ଣନା ରହିଛି ।

## ଭାରତ ସୃଷ୍ଟି

ଭରତଙ୍କ ନାମାନୁସାରେ ଆମ ଦେଶର ନାମ ଭାରତ । ଭରତ ହେଉଛନ୍ତି ଦୁଷ୍ମନ୍ତଙ୍କ ଔରସ ଓ ଶକୁନ୍ତଳାଙ୍କ ଗର୍ଭର ସନ୍ତାନ । ମହାଭାରତରେ ଭରତ ବଂଶ ରାଜାମାନଙ୍କୁ ଭାରତ ବୋଲି କୁହାଯାଇଛି । ମହାଭାରତ ହେଉଛି ଭାରତୀୟ ଜୀବନ ଓ ଯୁଦ୍ଧର ମହାକାବ୍ୟ । ସମଗ୍ର ଭାରତ ବର୍ଷର ପୃଷ୍ଠ ଭୂମିରେ ଏହା ରଚନା କରାଯାଇଛି । ଭାରତ ବର୍ଷର ବିଭିନ୍ନ ନଦନଦୀ, ସାଗର, ଅରଣ୍ୟ, ପର୍ବତ, ରାଜା, ଋଷି, ଜାତି, ଉପଜାତି ଓ ସର୍ବୋପରି ଜନଗଣଙ୍କ ଆଚାର ବ୍ୟବହାର ଧର୍ମ ଧାରା

ଆଦି ଏଥିରେ ବର୍ଣ୍ଣନା କରାଯାଇଛି । ଆର୍ଯ୍ୟ, ଦ୍ରାବିଡ଼, ନିଷାଦ ଓ କିରାତ ଏହି ଚାରିଶ୍ରେଣୀର ମନୁଷ୍ୟ ସେତେବେଳେ ଭାରତୀୟ ମହାଜାତିର ଅଂଶ ବିଶେଷ ଥିବାର କୁହାଯାଏ ।

ପ୍ରଥମେ ଦ୍ରାବିଡ଼ ମାନେ ଭାରତରେ ସଭ୍ୟତାର ପ୍ରତୀକ ହେଲେ କିନ୍ତୁ କାସ୍ପିଆନ୍ ହ୍ରଦ ନିକଟରୁ ଖ୍ରୀ:ପୂ: ୧୫୦୦ ବେଳକୁ ଆର୍ଯ୍ୟ ମାନଙ୍କର ଗୋଟିଏ ଗୋଷ୍ଠୀ ହିନ୍ଦୁକୁଶ ପର୍ବତମାଳା ଅତିକ୍ରମ କରି ଭାରତରେ ପ୍ରବେଶ କଲେ । ପ୍ରଥମେ ସେମାନେ ପଞ୍ଜାବ ଅଞ୍ଚଳରେ ବସତି ସ୍ଥାପନ କଲେ । ତା'ପରେ ସେମାନେ ଗାଙ୍ଗେୟ ଉପତ୍ୟକା ଓ ଦକ୍ଷିଣ ବିନ୍ଧ୍ୟ ପର୍ବତମାଳା ପର୍ଯ୍ୟନ୍ତ ବିସ୍ତୃତ ଅଞ୍ଚଳରେ ବାସ କଲେ । କେତେକାଳ ସେମାନେ ଦକ୍ଷିଣ ଭାରତ ସମେତ ଅନ୍ୟାନ୍ୟ ଅଞ୍ଚଳକୁ ପ୍ରସାରିତ ହେଲେ । ଫଳରେ ଆର୍ଯ୍ୟ ଓ ଦ୍ରାବିଡ଼ ମାନଙ୍କ ସଂସ୍କୃତିର ସମନ୍ୱୟରେ ଭାରତୀୟ ସଂସ୍କୃତିର ବିକାଶ ଘଟିଲା । ମନୁ ତାଙ୍କ ସ୍ମୃତିଶାସ୍ତ୍ରରେ ଏ ପ୍ରସଙ୍ଗରେ ଉଲ୍ଲେଖ କରିଛନ୍ତି :-

''ହିମବଦ୍ ବିନ୍ଧ୍ୟୟୋ ମଧ୍ୟେ ଦେବନଦ୍ୟୋଃ ଯଦନ୍ତରଂ,
ତଂ ଦେବ-ନିର୍ମିତଂ ଦେଶଂ ଆର୍ଯ୍ୟାବର୍ତ୍ତଃ ପ୍ରଚକ୍ଷ୍ୟତେ''

ଅର୍ଥାତ୍ ହିମାଳୟ ଓ ବିନ୍ଧ୍ୟାଚଳର ବିସ୍ତୃତ ଇଲାକାରେ ଯେଉଁ ''ଦେବ ଦେଶ''ର ସୃଷ୍ଟି ହେଲା ତାହାର ନାମ, ଆର୍ଯ୍ୟାବର୍ତ୍ତ । ଅଥବା ''ଆର୍ଯ୍ୟଭୂମି'' ହେଲା । ଏଇ ଆର୍ଯ୍ୟ ଭୂମିକୁ ଦେବତାର ଭୂମି ଭାବରେ ଭାରତର ସ୍ମୃତି ପୁରାଣ ଗୁଡ଼ିକ ବର୍ଣ୍ଣନା କରିଛନ୍ତି । ଏହି ଦେଶର ଭୂଷଣ ହେଲା ''ସଦାଚାର'' । ଏହି ସଦାଚାରର ଭୂଷଣ ହେଲା ''ଚରିତ୍ର'' ଅର୍ଥାତ୍ ଆଚରଣ ସିଦ୍ଧ ପବିତ୍ର ବ୍ୟବହାରବୋଧ ।

## ଓଡ୍ର-ଓଡ଼ିଶା-ଓଡ୍ରା ସିଂହ

ଓଡ଼ିଶା ବୋଇଲେ ଆଜି ଯେଉଁ ରାଜ୍ୟକୁ ବୁଝାଉଛି, ତାହା ବହୁ କାଳପୂର୍ବେ ତିନୋଟି ପ୍ରଦେଶ ଥିଲା । ସେଗୁଡ଼ିକ ହେଲା ; ଓଡ୍ର, ଉତ୍କଳ ଓ କଳିଙ୍ଗ । ଏହା ପୁରା କାଳରେ ଶବର ମାନଙ୍କ ଅଧ୍ୟୁଷିତ ଭୂମି ଥିଲା । ତା'ପରେ ଏ ପ୍ରଦେଶ ମାନଙ୍କରେ ଦ୍ରାବିଡ଼ ସଭ୍ୟତା ବିସ୍ତାର ଲାଭ କଲା । ତା'ପରେ ଆର୍ଯ୍ୟମାନେ ଆସି ସେମାନଙ୍କ ସଭ୍ୟତା ବିସ୍ତାର କଲେ । ଦ୍ରାବିଡ଼ ସଭ୍ୟତା ଓ ଆର୍ଯ୍ୟ ସଭ୍ୟତା ପରସ୍ପର ଉପରେ ପ୍ରଭାବ

ବିସ୍ତାର କରିବା ଫଳରେ ଏକ ନୂତନ ସଭ୍ୟତା ସୃଷ୍ଟି ହେଲା । ଏହା ହିଁ ବାସ୍ତବିକ ବର୍ତ୍ତମାନର ଭାରତୀୟ ସଭ୍ୟତା ।

ଦ୍ରାବିଡ଼ ଭାଷାରେ ଓଡ଼ିସୁ ଶବ୍ଦର ଅର୍ଥ ଚଷା । ଓଡ଼ିସୁ ଶବ୍ଦରୁ ଆର୍ଯ୍ୟମାନେ ସଂସ୍କୃତ ଭାଷାରେ ଉଡ୍ର ଶବ୍ଦ ବ୍ୟବହାର କଲେ ।

ଗଙ୍ଗ ବଂଶର ଅନନ୍ତ ବର୍ମା ଚୋଡ଼ଗଙ୍ଗ ଦେବ (୧୨ଶ ଶତାବ୍ଦୀ) କଳିଙ୍ଗ, ଉତ୍କଳ ଓ ଉଡ୍ରକୁ ଏକ ଶାସନାଧୀନ କଲେ । ସେହି ଗଙ୍ଗ ବଂଶ ରାଜତ୍ୱ କାଳରେ ଓଡ଼ିଆ ଭାଷାର ସୃଷ୍ଟି । ଗଙ୍ଗ ବଂଶର ରାଜଧାନୀ ଯେତେବେଳେ କଳିଙ୍ଗ ନଗରୀରୁ କଟକକୁ ଉଠିଆସିଲା, ସେତେବେଳେ କଳିଙ୍ଗର ନାମ ପରିବର୍ତ୍ତନ ହୋଇ ଉଡ୍ର ହେଲା । ନବମ ଓ ଦଶମ ଶତାବ୍ଦୀର ତାମ୍ର ଶାସନ, ଶିଳାଲିପି ଓ ଅନ୍ୟାନ୍ୟ ଐତିହାସିକ ଉପାଦାନରେ ଉଡ୍ର ଦେଶ ବା 'ଓଡ଼ିଶା' ନାମ କରଣ ହେଲା ।

ଚୀନ୍ ପରିବ୍ରାଜକ ହୁଏନସାଂ ଖ୍ରୀ:୬୩୮ ରେ ଉଡ୍ର ବିଷୟରେ ବର୍ଣ୍ଣନା କରିବାକୁ ଯାଇ ଲେଖିଛନ୍ତି ଯେ ଏହାର ପରିସୀମା ୧୧୬୭ ମାଇଲ୍ ଥିଲା । ଏହାର ଦକ୍ଷିଣ ପୂର୍ବ ଦିଗ ସମୁଦ୍ର ଦ୍ୱାରା ପରିବେଷ୍ଟିତ ଥିଲା । ଏହି ସମୁଦ୍ର କୂଳରେ ପୃଥିବୀ ପ୍ରସିଦ୍ଧ ଜଗନ୍ନାଥ ଦେଉଳ ଶୋଭା ପାଉଥିଲା । ଏହା ମହାନଦୀ ଓ ସୁବର୍ଣ୍ଣରେଖା ଉପତ୍ୟକା ମଧ୍ୟରେ ସିମୀତ ଥିଲା । ଆଧୁନିକ କଟକ ଜିଲ୍ଲା, ଯାଜପୁର ଜିଲ୍ଲା, କେନ୍ଦ୍ରାପଡ଼ା ଜିଲ୍ଲା ଓ ସମ୍ବଲପୁର-ସୋନପୁର ଜିଲ୍ଲାର କିଛି ଅଂଶକୁ ନେଇ ଓଡ୍ର କୁହାଯାଉଥିଲା । ଓଡ୍ର ଦେଶର ରାଜଧାନୀର ପରିଧି ୪ ମାଇଲ୍ ଥିଲା ବୋଲି ହୁଏନସାଂ ତାଙ୍କ ବିବରଣୀରେ ଲେଖିଛନ୍ତି । ଓଡ୍ର ଦେଶର ଅଧିକାଂଶ ଲୋକ ବୌଦ୍ଧ ଧର୍ମାବଲମ୍ବୀ । ଓଡ଼ାସିଂହ ଠାରୁ ଅନତି ଦୂରରେ ବୌଦ୍ଧ କିର୍ତ୍ତି ପୁଷ୍ପଗିରି, ରତ୍ନଗିରି, ଲଳିତଗିରି ଅବସ୍ଥିତ । ଏଠାରୁ ବହୁ ବୌଦ୍ଧ କିର୍ତ୍ତିର ସନ୍ଧାନ ମିଳିଛି ।

ମହାଭାରତରେ ବର୍ଣ୍ଣନା ଅଛିଯେ କଳିଙ୍ଗ ରାଜା କୌରବଙ୍କ ପକ୍ଷରେ ଓଡ୍ରଦେଶର ରାଜା ପାଣ୍ଡବ ମାନଙ୍କ ପକ୍ଷରେ ମହାଭାରତ ଯୁଦ୍ଧରେ ଅବତୀର୍ଣ୍ଣ ହୋଇଥିଲେ । ଦ୍ରୌପଦୀଙ୍କ ସ୍ୱୟମ୍ବର ସଭାରେ କଳିଙ୍ଗ ରାଜା ଦୁର୍ଯ୍ୟୋଧନଙ୍କ ଗହଣରେ ଥିଲେ । ଶ୍ରୁତାୟୁ ନାମକ କଳିଙ୍ଗ ରାଜା ଦ୍ରୋଣଙ୍କ ସେନାର ଦକ୍ଷିଣ ଭାଗରେ ଥିଲେ । ସେ ଜୟଦ୍ ରଥଙ୍କୁ ରକ୍ଷା କରି ଭୀମ ଓ ଅର୍ଜୁନଙ୍କୁ ଆକ୍ରମଣ କରିଥିଲେ । କୁରୁକ୍ଷେତ୍ର ଯୁଦ୍ଧ

ଓଡ୍ର ରାଜ୍ୟର ଓଡ଼ାସିଂହଠାରେ ହୋଇଥିବାର କଳ୍ପନା କରାଯାଇଛି । 'ଓଡ଼ାସିଂହ' ଶବ୍ଦ 'ଉଡ୍ରସିଂହ' ଶବ୍ଦର ଅପଭ୍ରଂସ ହୋଇପାରେ । ବାସ୍ତବରେ ଉଡ୍ର ଲୋକମାନେ ସିଂହଭଳି ପରାକ୍ରମଶାଳୀ ଥିବାର ଉଲ୍ଲେଖ ରହିଛି । ପରବର୍ତ୍ତୀ ବର୍ଣ୍ଣନା:ରୁ ଏହି ଯୁକ୍ତିର ସାରବତା ଜାଣିହୁଏ । ବିଶ୍ୱନାଥ କବିରାଜ ତାଙ୍କ 'ସାହିତ୍ୟ ଦର୍ପଣ'ରେ ଉଲ୍ଲେଖ କରିଛନ୍ତି- ''କଳିଙ୍ଗାଃ ସାହସିକାଃ'' । ଓଡ଼ାସିଂହର ଅନତିଦୂରରେ ଛାଣିପୁର ପଞ୍ଚାୟତରେ ବାଲିଆ ଗ୍ରାମରେ ଭୀଷ୍ମ କୁଣ୍ଡି ବିଖ୍ୟାତ । ଏଠାରେ ଭୀଷ୍ମ ଶର ଶଯ୍ୟା କରିଥିଲେ ବୋଲି କୁହାଯାଏ । ମହାଭାରତ ଯୁଦ୍ଧରେ ଅର୍ଜୁନଙ୍କ ଶରରେ ଶରଶଯ୍ୟା କରିଥିବା ଅବସ୍ଥାରେ ପାଣି ଟୋପାଏ ପାଇଁ ସେ ଆକୁଳ ନିବେଦନ କରିଥିଲେ । ଅର୍ଜୁନ ଶର ସାହାଯ୍ୟରେ ମେଦିନିଫୁଟାଇ ଜଳ ବାହାର କରି ଭୀଷ୍ମଙ୍କ ତୃଷ୍ଣା ମେଣ୍ଟାଇଥିଲେ । ଯେଉଁଠାରୁ ଜଳ ନିର୍ଗତ ହେଲା, ତାହା ଏକ ସ୍ରୋତରେ ପରିଣତ ହୋଇଥିଲା । ବର୍ତ୍ତମାନର ଭୀଷ୍ମକୁଣ୍ଡି ଏହାର ସ୍ମାରକୀ ଭାବେ ପରିଚିତ । ଭୀଷ୍ମ କୁଣ୍ଡିର ଉତ୍ପତ୍ତି ଓ ମହିମା ସଂପର୍କରେ ବହୁ ମହାପୁରୁଷଙ୍କ ପୁସ୍ତକରେ ବର୍ଣ୍ଣନା ରହିଛି । ଏହା ଏକ ତୀର୍ଥଭୂମି ବୋଲି କୁହାଯାଉଛି। କୁଣ୍ଡି ନଦୀ କୂଳରେ ଅନେକ ଦେବା ଦେବୀ ଶୋଭା ପାଉଛନ୍ତି । କୁଣ୍ଡି ନଦୀ ଛଅଟି ବିଶିଷ୍ଟ ମୁହାଣରୁ ସୃଷ୍ଟି । ଯଥା : ନାଳିଆ ମୁହଁ, ଫରିକାବ ମୁହଁ, କାଳିକୋଇଲି ମୁହଁ, ବାଲିଆ ମୁହଁ, ଝର ମୁହଁ ଓ କାଶିନଈ ମୁହଁ । ଉକ୍ତ ନଦୀର ଉଭୟପାର୍ଶ୍ୱରେ ଅଷ୍ଟ ବଟ ବିଦ୍ୟମାନ । ଯଥା ଚୌକି ବଟ( ବାଲିଆ), ମାଧିଆ ବଟ(ନଈଗୁଆଁ), ଷଠି ବଟ(କଲ୍ୟାଣପୁର), ଗେଞ୍ଜବଟ (ବାହବଳପୁର), ସାଧୁ ବଟ(ଜାହାଙ୍ଗୀରବାଦ୍), ଗୁରଜ ବଟ ଓ କ୍ଷେତ୍ର ବଟ (ବଳଭଦ୍ରପୁର), ଗୁରୁବାରିଆ ବଟ (ବାସୁଦେବ ପୁର) ।

ଅଚ୍ୟୁତାନନ୍ଦଙ୍କ ମାଳିକା ଅନୁସାରେ ଭୀଷ୍ମ କୁଣ୍ଡି ନିକଟରେ ଭୀଷ୍ମଙ୍କର ରାଜନଅର ଥିଲା । ଭୀଷ୍ମରାଜାଙ୍କ ଦ୍ୱାରା ଅସଂପୂର୍ଣ୍ଣ ଯଜ୍ଞ ଏହି ଯୁଗରେ ପୂର୍ଣ୍ଣାହୁତି ହେବ ବୋଲି ମହାପୁରୁଷ ଅରକ୍ଷିତ ଦାସଙ୍କ ମାଳିକାରୁ ଜଣାପଡ଼େ । ମହାଭାରତ ଅନୁସାରେ ପାଣ୍ଡବମାନେ ଏକ ତୁଳସୀବଣ ନିକଟରେ ଅସ୍ତ୍ରବିଦ୍ୟା ଶିକ୍ଷା କରିଥିଲେ । ଓଡ଼ାସିଂହ-ଧନୁପଡ଼ା ସୀମା ପୋଡାପୋଖରୀ ନିକଟରେ ଏବେ ସୁଦ୍ଧା ତୁଳସୀବଣ ବିଦ୍ୟମାନ । ଏ ବଣ କେବେଠାରୁ ସୃଷ୍ଟି ହୋଇଛି କେହି କହିପାରୁନାହାଁନ୍ତି । ସମ୍ଭବତଃ ପାଣ୍ଡବମାନେ ଏହି ବଣ ସନ୍ନିକଟରେ ଯୁଦ୍ଧବିଦ୍ୟା ଶିକ୍ଷା କରିଥିଲେ । ଧନୁପଡ଼ାର ପୋଡାପୋଖରୀ ସନ୍ନିକଟ ଓଡ଼ାସିଂହ ପାଟରେ ଏକ ବିରାଟ ପଥର ଅଧେ ମାଟି ତଳେ ଓ ଅଧେ ମାଟି

ଉପରେ ରହିଛି । କେହି କେହି କହନ୍ତି ଏହି ପଥରକୁ ଲକ୍ଷକରି ପାଣ୍ଡବମାନେ ଧନୁର୍ବିଦ୍ୟା ଅଭ୍ୟାସ କରୁଥିଲେ । ଏହି ଦୃଷ୍ଟିରୁ ଧନୁପଡ଼ା ଗ୍ରାମର ବିଶେଷତ୍ୱ ସହଜେ ଅନୁମେୟ ।

ଓଡ଼ାସିଂହର ପଶ୍ଚିମ-ଉତ୍ତର କୋଣ ବିରୂପାନଦୀ ତଟ ବର୍ତ୍ତୀ ଦଶ କି.ମି. ଦୂର ଗଣେଶ୍ୱର ପୁର ଠାରେ ପଞ୍ଚୁପାଣ୍ଡବ ମନ୍ଦିର ଓ ଚଣ୍ଡୀଖୋଲ୍-କେନ୍ଦ୍ରାପଡ଼ା ମଧ୍ୟଭାଗରେ ପଞ୍ଚୁପାଣ୍ଡବଙ୍କ ମନ୍ଦିର ପାଣ୍ଡବ ମାନଙ୍କ ସଂପର୍କରେ ଅନେକ ତଥ୍ୟ ଯୋଗାଇଥାଏ । ଏତଦ୍ ବ୍ୟତୀତ ଏଠାରୁ ଦଶ କି:ମି: ଦୂର ଟାଙ୍ଗିଥାନା ଭଗତପୁର ଠାରେ ପାଞ୍ଚଭାୟା (ପଞ୍ଚବଟି) ପାହାଡ଼ ବିଦ୍ୟମାନ । କିଚକ ହୁଡ଼ା ଓ ଚଉଦ୍ୱାର ଠାରେ ବିରାଟ ରାଜାଙ୍କ ଗାଦି ପାଣ୍ଡବ ମାନଙ୍କ ସମ୍ପର୍କରେ ତଥ୍ୟ ଯୋଗାଇଛି ।

କୁରୁକ୍ଷେତ୍ର ଯୁଦ୍ଧ ବେଳେ କଳିଙ୍ଗ ସେନା ଭଗଦତ୍ତଙ୍କ ଦ୍ୱାରା ଚାଳିତ ହୋଇଥିଲେ । ଦ୍ରୋଣ ଯେଉଁ ଗରୁଡ଼ ବିହ୍ୱ ରଚନା କରିଥିଲେ, ତା'ର କଣ୍ଠ ଦେଶ ରକ୍ଷା ଭାଗରେ କଳିଙ୍ଗ ରାଜାଥିଲେ । ଯାମଦାଗ୍ନି କଳିଙ୍ଗ ରାଜାଙ୍କୁ ପରାସ୍ତ କରିଥିଲେ । କଳିଙ୍ଗ ରାଜା ସାତ୍ୟକିଙ୍କ ସହ ଯୁଦ୍ଧ କରିଥିଲେ । କଳିଙ୍ଗ ରାଜା ଶକୁନିକୁ ସାହାଯ୍ୟ କରିଥିଲେ । ମହା ଭାରତରେ କଳିଙ୍ଗ ଅଧିବାସୀମାନଙ୍କୁ କ୍ଷତ୍ରିୟ କୁହାଯାଏ ।

କଥିତ ଅଛ ଯେ : ଓଡ଼ାସିଂହଠାରେ ଥିବା ପାତାଳି ସମ୍ଭୁତ ଶ୍ରୀ ଶ୍ରୀ ଗରୁଡ଼ ମହାପ୍ରଭୁଙ୍କୁ ଦ୍ରୋଣ ନିୟମିତ ଦର୍ଶନ କରୁଥିଲେ । ଆଉ କେତେକଙ୍କ ମତରେ ପାତାଳ ଗରୁଡ଼ ଥିବାରୁ ଏହାକୁ ରମ୍ୟକଦ୍ୱୀପ କୁହାଯାଏ । ବୋଧହୁଏ ଏ ଅଞ୍ଚଳ ଏକଦା ସମୁଦ୍ର ଦ୍ୱାରା ଆଚ୍ଛାଦିତ ହୋଇଥିଲା ।

## ଗରୁଡ଼ ଜନ୍ମ ପ୍ରସଙ୍ଗ

ଦକ୍ଷପ୍ରଜାପତିଙ୍କ ତେରଜଣ ଝିଅ । ସେ ତେର ଝିଅଙ୍କୁ ମୁନିଶ୍ରେଷ୍ଠ ମରିଚିଙ୍କ ପୁତ୍ର କଶ୍ୟପଙ୍କୁ ବିବାହ ଦେଲେ । ଝିଅମାନେ ହେଲେ, ଅଦିତି, ଦିତି, ଦନୁ, ସଂହିକା, ମୁନି, କାଳା, ଦନାୟୁ, କ୍ରୋଧା, ପ୍ରଧା, ବିନତା, କପିଳା, ବିଶ୍ୱା ଓ କଦ୍ରୁ । ତେଉଜଣ ପତ୍ନୀଙ୍କ ମଧ୍ୟରୁ କଶ୍ୟପ କଦ୍ରୁ ଓ ବିନତାଙ୍କୁ ଅତ୍ୟନ୍ତ ଭଲ ପାଉଥିଲେ । ଦିନେ ସେ କଦ୍ରୁ ଓ ବିନତାଙ୍କୁ ବରଦେବାକୁ ସ୍ଥିର କଲେ । କଶ୍ୟପ ସେ ଦୁହିଙ୍କୁ କହିଲେ ଇଚ୍ଛାମତେ ଯାହା ମାଗୁଛ ମାଗ ମୁଁ ତାହା ଅବିଳମ୍ବେ ପୂରଣ କରିବି । ଏହା ଶୁଣି ବିନତା ଦୁଇଟି ତେଜସ୍ୱୀ ସନ୍ତାନ ପାଇଁ ପ୍ରାର୍ଥନା କଲେ ଓ କଦ୍ରୁ ସହସ୍ର ସନ୍ତାନ ପାଇଁ ପ୍ରାର୍ଥନା କଲେ ।

କଶ୍ୟପ ଋଷି ଉଭୟ ପତ୍ନୀଙ୍କୁ ସନ୍ତୁଷ୍ଟ କରିବା ପାଇଁ ସେମାନଙ୍କ ଇଚ୍ଛାନୁସାରେ ବରଦାନ କଲେ ଓ ନିଜେ ବଣକୁ ତପସ୍ୟା କରିବାକୁ ଗଲେ । କିଛି କାଳ ପରେ କଦ୍ରୁ ଶହେଟି ଡ଼ିମ୍ବ ଜନ୍ମ କଲେ ଓ ବିନତା ଦୁଇଟି ଡ଼ିମ୍ବ ଜନ୍ମ କଲେ । ଉଭୟ ନାରୀଙ୍କ ଡ଼ିମ୍ବକୁ ସେମାନଙ୍କ ଦାସୀଗଣ ଭିନ୍ନ ଭିନ୍ନ ଭାବେ ଉଷ୍ମ ଭାଣ୍ଡରେ ରଖିଲେ । ଏହିପରି ପାଞ୍ଚଶହ ବର୍ଷ ବିତିଗଲା ପରେ କଦ୍ରୁଙ୍କ ଡ଼ିମ୍ବ ଫୁଟିବାକୁ ଆରମ୍ଭ କଲା କିନ୍ତୁ ବିନତାଙ୍କ ଡ଼ିମ୍ବ ଫୁଟିଲା ନାହିଁ । ସେ ରାଗରେ ଦୁଇଟି ଡ଼ିମ୍ବରୁ ଗୋଟିକକୁ ଫୁଟାଇ ଦେବାରୁ ତା ମଧ୍ୟରେ ଏକ ପୁତ୍ର ଥିବାର ସେ ଦେଖିଲେ । ନାଭିଠାରୁ ଉପରକୁ ଶରୀର ହୋଇଛି । କିନ୍ତୁ ଗୋଡ଼ ଆଡ଼କୁ ଶରୀର ହୋଇନାହିଁ । ଡ଼ିମ୍ବରୁ ଜାତ ଅର୍ଦ୍ଧଶରୀରଟି ମାଁକୁ କହିଲେ - .ମୋର ସମଗ୍ର ଶରୀର ଗଠନ ପୂର୍ବରୁ ତୁମେ ଅଣ୍ଡା ଭାଙ୍ଗିଦେବା ଦ୍ୱାରା ମୁଁ ତୁମକୁ ଅଭିଶାପ ଦେଉଛି ତୁମେ ୫ ଶହ ବର୍ଷ କଦ୍ରୁର ଦାସୀ ରହିବ । ଅନ୍ୟ ଡିମ୍ବଟିକୁ କେବେ ଫଟାଇବନାହିଁ । ସେଥିରୁ ଯେଉଁ ପୁତ୍ର ଜନ୍ମ ଲଭିବ ସେ ତୁମକୁ ଦାସୀପଣରୁ ମୁକ୍ତ କରିବ । ଏହା କହିଲା ବେଳେ ପ୍ରବଳ ଥଣ୍ଡାରେ ସେ କଷ୍ଟ ପାଉଥିଲେ । ତାଙ୍କ କଷ୍ଟ ଦେଖି ବିନତା ସୂର୍ଯ୍ୟଙ୍କୁ ସ୍ମରଣ କଲେ ଓ ସୂର୍ଯ୍ୟଙ୍କ ନିକଟକୁ ପଠାଇଦେଲେ । ସେଠାରେ ସେ ସୂର୍ଯ୍ୟଙ୍କ ସାରଥି ହେବା ସଙ୍ଗେ ସଙ୍ଗେ ଅରୁଣ ନାମ ଧାରଣ କଲେ । ଏହିପରି କିଛିକାଳ ଗଲାପରେ ଗରୁଡ଼ ଜନ୍ମହେଲେ । ଗରୁଡ଼ ଯେଉଁ ସ୍ଥାନରେ ଜନ୍ମ ହେଲେ, ତାକୁ ରମ୍ୟକ ଦ୍ୱୀପ କହନ୍ତି । ସପ୍ତ ସାଗର ଦ୍ୱାରା ପରିବେଷ୍ଟିତ ଏହି ଦ୍ୱୀପଟି ଅତ୍ୟନ୍ତ ମନୋରମ ।

ଗରୁଡ଼ ଜନ୍ମ ହେବା ମାତ୍ରେ ଭୟଙ୍କର ଶରୀର ଧାରଣ କରି ଆକାଶରେ ଉଡ଼ିବାକୁ ଲାଗିଲେ ଓ ଅନ୍ୟାନ୍ୟ ପକ୍ଷୀମାନଙ୍କୁ ଶିକାର କରି ନିଜର କ୍ଷୁଧା ମେଣ୍ଟାଇବାକୁ ଚେଷ୍ଟାକଲେ । ଗରୁଡ଼ ପକ୍ଷୀର ଚଞ୍ଚୁ ବୃହତ୍ ଆକାର ଓ ଚକ୍ଷୁ ବଡ଼ ବଡ଼ । ତାଙ୍କର ତେଜ ଦେଖି ସ୍ୱର୍ଗର ଦେବତାମାନେ ଭୟଭୀତ ହୋଇ ଅଗ୍ନିଦେବତାଙ୍କ ଶରଣାପନ୍ନ ହେଲେ । ଗରୁଡ଼ଙ୍କୁ ଭୟକରି ଅଗ୍ନି ଦେବତାଙ୍କ ପାଖରେ ଶରଣ ପଶିଥିବା ଅନ୍ [illegible] ମାନଙ୍କୁ ସେ କହିଲେ ଯେ ଗରୁଡ଼ ମୋ ଠାରୁ ତେଜୀୟାନ ମୁଁ ତୁମକୁ [illegible] କରିପାରିବିନାହିଁ । ଏହାଶୁଣି ଦେବତାମାନେ କିଛି ଦୂରରେ [illegible]ଙ୍କୁ ପ୍ରାର୍ଥନା [illegible] ସେମାନଙ୍କ ପରିତ୍ରାଣ ପାଇଁ ନିବେଦନ କଲେ । ଦେ [illegible] ଦେଖିଲେଯେ ଗରୁଡ଼ ସୂର୍ଯ୍ୟଙ୍କ ପରି ଉତପ୍ତ । ସେ ଶାନ୍ତ ନହେଲେ [illegible] ଦେବଲୋକ ଭସ୍ମୀଭୂତ ହୋଇଯିବ ।

ଦେବତାମାନଙ୍କର ଆକୁଳ ନିବେଦନ ଦେବର୍ଷି ନାରଦ ଜାଣିପାରି ଗରୁଡ଼ଙ୍କୁ ତାଙ୍କ ତେଜ କମାଇବାପାଇ ଅନୁରୋଧ କଲେ । ତତ୍‌କ୍ଷଣାତ୍ ଗରୁଡ଼ ତାଙ୍କ ତେଜ କମାଇ ନିଜ ଜ୍ୟୋଷ୍ଠଭ୍ରାତା ଅରୁଣଙ୍କ (ଯେକି ସୂର୍ଯ୍ୟଙ୍କ ସାଥି) ନିକଟକୁ ଗଲେ ଓ ତାଙ୍କୁ ପିଠିରେ ବସାଇ ପିତୃଗୃହକୁ ପ୍ରତ୍ୟାବର୍ତ୍ତନ କଲେ ମାତାଙ୍କୁ ଦେଖିବାପାଇଁ । ମାତା ବିନତା ଇତି ମଧ୍ୟରେ କଦ୍ରୁଙ୍କ ଦାସୀ ହୋଇ ସେବାକରୁଥିଲେ । ଗରୁଡ଼ କଦ୍ରୁଙ୍କ ପାଖରେ କିଛିଦିନ ରହିଲାପରେ ଦିନେ କଦ୍ରୁ ଓ ତାର ସନ୍ତାନ ବର୍ଗ ସମୁଦ୍ର ମଧ୍ୟରେ ଥିବା ଏକାନ୍ତ ସ୍ଥାନକୁ ନେଇଯିବା ପାଇ ବିନତାଙ୍କୁ ନିର୍ଦ୍ଦେଶ ଦେଲେ । ସେହି ସ୍ଥାନରେ ନାଗମାନେ ବାସ କରନ୍ତି । ବିନତା କଦ୍ରୁଙ୍କୁ ବହନ କଲେ ଓ ଗରୁଡ଼ କଦ୍ରୁଙ୍କ ସନ୍ତାନ ବର୍ଗ ସର୍ପମାନଙ୍କୁ ବହନ କରି କ୍ଷିପ୍ର ଗତିରେ ଉଡ଼ିବାକୁ ଲାଗିଲେ । ଏହିପରି ଆକାଶର ଉଡୁ ଉଡୁ ସୂର୍ଯ୍ୟଙ୍କ ପାଖାପାଖି ହୋଇଗଲେ ଓ ସୂର୍ଯ୍ୟଙ୍କ ତେଜରେ ସର୍ପମାନେ ଚେତାଶୂନ୍ୟ ହେବାକୁ ଲାଗିଲେ । ଏହା ଦେଖି କଦ୍ରୁ ମ୍ରିୟମାଣ ହୋଇ ଇନ୍ଦ୍ରଙ୍କୁ ବର୍ଷା କରିବା ଲାଗି ପ୍ରାର୍ଥନା କଲେ, କଦ୍ରୁଙ୍କ ପ୍ରାର୍ଥନାରେ ଇନ୍ଦ୍ର ସନ୍ତୁଷ୍ଟ ହୋଇ ପ୍ରବଳ ବର୍ଷା କଲେ । ଚାରିଆଡ଼େ ଘୋର ଅନ୍ଧକାର ଘୋଟିଗଲା । ଶୀତଳ ପବନ ଓ ବର୍ଷା ପାଇ ନାଗ ମାନେ ଆନନ୍ଦିତ ହେଲେ ଓ କିଛିକ୍ଷଣ ପରେ ମାତାଙ୍କ ସହ ଗରୁଡ଼ ରମଣକ ଦ୍ୱୀପରେ ପହଞ୍ଚିଲେ ।

## ରମଣକ ଦ୍ୱୀପର ପରିଚୟ

ଏହି ଦ୍ୱୀପଟି ସମୁଦ୍ର ପାଖରେ ଅବସ୍ଥିତ । ସେହି ଦ୍ୱୀପ ସୁନା ଭଳି ସୁନ୍ଦର । ବିଭିନ୍ନ ପ୍ରକାର ଗଛଲତା ଓ ଫଳ ପୁଷ୍ପରେ ଦ୍ୱୀପଟି ଆଚ୍ଛାଦିତ । ନାନା ପକ୍ଷୀମାନେ ସେଠାରେ ବାସ କରନ୍ତି । ସେହି ଦ୍ୱୀପରେ ଏକ ବିଚିତ୍ର ମନ୍ଦିର ଅଛି । ମନ୍ଦିରରେ ଚନ୍ଦ୍ରାତପ ଟଣା ହୋଇଛି । ତହିଁରେ ପେଣ୍ଡା ପେଣ୍ଡ ମୁକ୍ତା - ହାର ଲମ୍ବିଛି । ବଇଦୁର୍ଯ୍ୟ ଓ ସୁନାରେ ଦ୍ୱୀପଟି ଚିତ୍ର ବିଚିତ୍ର ହୋଇଛି । ସମୁଦ୍ର ମଧ୍ୟରେ ମଧ ବିଭିନ୍ନ ପଦ୍ମ ଓ କଇଁ ଫୁଲ ଶୋଭାପାଉଛି । ମାଛମାନେ ମହା ସୁଖରେ ଖେଳୁଛନ୍ତି । ବଗମାନେ ମାଛ ଖାଇବା ଉଦେଶ୍ୟରେ କୁଳରେ ବସିଛନ୍ତି । ବିଭିନ୍ନ ଫୁଲରୁ ଅତି ସୁନ୍ଦର ବାସ୍ନା ଆସୁଛି । ଏହି ସ୍ଥାନଟିକୁ ସତେ ଯେପରି ସ୍ୱର୍ଗରୁ ଅପସରାମାନେ ଭ୍ରମଣରେ ଆନନ୍ଦ ଭୋଗ କରିବାକୁ ଆସିଛନ୍ତି । ସେ ବଣରେ କଦ୍ରୁର ସନ୍ତାନମାନେ ସେହି ରମଣୀୟ ସ୍ଥାନକୁ ଆସି ଆନନ୍ଦରେ ଦିନ କାଟିବାକୁ ଲାଗିଲେ ।

କିଛି ଦିନ ଆନନ୍ଦରେ କଟିବାପରେ ଦିନେ କଦ୍ରୁଙ୍କ ପୁତ୍ରମାନେ ଗରୁଡ଼ଙ୍କୁ କହିଲେ ଯଦି ଅନ୍ୟ କେଉଁଠି ତତ୍ତୁଲ୍ୟ ରମଣୀୟ ଦ୍ୱୀପଥାଏ, ଆମ୍ଭଙ୍କୁ ସେଠାକୁ ନେଇଚାଲ । କାରଣ ତୁମ୍ଭ ବହୁ ଯୋଜନ ପର୍ଯ୍ୟନ୍ତ ଉଡ଼ିପାର ଏବଂ ସମସ୍ତ ବୃତ୍ତାନ୍ତ ତୁମ୍ଭଙ୍କୁ ଜଣାଅଛି । ଏହାଶୁଣି ଗରୁଡ଼ଙ୍କ ମନରେ ସନ୍ଦେହ ସୃଷ୍ଟି ହେଲା । କଦ୍ରୁ ନନ୍ଦନମାନେ କଦାକାର ଓ କ୍ଷୁଦ୍ରହୋଇ ସ୍ଥାନ ପରିତ୍ୟାଗ କରିବାକୁ କାହିଁକି ନିର୍ଦ୍ଦେଶ ଦେଉଛନ୍ତି । ତାହା ସେ ଜାଣିବାକୁ ଚାହିଁଲେ । ସେ ମାତା ବିନତାଙ୍କୁ ଏହାର କାରଣ ପଚାରିଲେ । ମାତା କହିଲେ ମୁଁ ସପତ୍ନୀ କଦ୍ରୁର ଦାସୀ । ସେ ଓ ତାର ପିଲାମାନେ ମତେ କପଟ କରି ଦାସୀତ୍ୱ ବନ୍ଧନରେ ବାନ୍ଧିଛନ୍ତି । ଏଣୁ ତାଙ୍କ କଥା ରକ୍ଷାକରିବାକୁ ପଡ଼ିବ । ଏକଥା ଶୁଣି ଗରୁଡ଼ଙ୍କ ମନରେ ଗଭୀର ଦୁଃଖ ଜାତ ହେଲା । ଦାସୀତ୍ୱ ବନ୍ଧନରୁ ଜନନୀଙ୍କୁ ମୁକ୍ତ କରିବା ପାଇଁ କଦ୍ରୁଙ୍କ ସର୍ପ ପୁତ୍ରମାନଙ୍କୁ ସେ ନିବେଦନ କଲେ । କିନ୍ତୁ ମନମଧ୍ୟରେ ପ୍ରତିଶୋଧର ବହ୍ନି ଲୁକାୟିତ ଥାଏ । ଗରୁଡ଼ଙ୍କ କଥା ଶୁଣି ସର୍ପମାନେ କହିଲେ ଯଦି ତୁମ୍ଭେ ବଳବାନ ବୋଲି ଭାବୁଥାଅ, ଆମ୍ଭମାନଙ୍କୁ ଅମୃତ ଆଣିଦିଅ । ଆମ୍ଭେ ଅମୃତ ଖାଇଲେ ତୁମ୍ଭ ମା ଦାସତ୍ୱ ବନ୍ଧନରୁ ମୁକ୍ତି ପାଇବେ । ମାଙ୍କ ମୁକ୍ତିପାଇଁ ଗରୁଡ଼ ଅମୃତ ସନ୍ଧାନରେ ବାହାରିଲେ । ଯିବା ପୂର୍ବରୁ ମା'ଙ୍କୁ କିଛି ଖାଇବାକୁ ମାଗିଲେ । ମାଆ ଖାଇବାକୁ ଦେଇନପାରି କହିଲେ ଯେ - ସମୁଦ୍ର ମଧ୍ୟରେ ଏକ ଦିବ୍ୟପୁର ଅଛି । ସେଠାରେ ସହସ୍ର ସଂଖ୍ୟାରେ ନିଷାଦ (ଶବର) ଅଛନ୍ତି । ତାଙ୍କୁ ଭକ୍ଷଣ କରି କ୍ଷୁଧା ମେଣ୍ଟାଇବୁ । କିନ୍ତୁ ସେଠାରେ ଥିବା ବ୍ରାହ୍ମଣଙ୍କୁ ମାରିବୁ ନାହିଁ । ସବୁଲୋକ ବଧ୍ୟ ନୁହନ୍ତି । ବ୍ରାହ୍ମଣ ମାନଙ୍କ କୋପ ସୂର୍ଯ୍ୟ ତାପଠାରୁ ଅଧିକ । ସେମାନେ କ୍ରୋଧକଲେ ସର୍ବନାଶ ହୋଇଯିବ । ଏଥିପାଇଁ ତ୍ରିଭୁବନ ଲୋକେ ବ୍ରାହ୍ମଣମାନଙ୍କୁ ଡରନ୍ତି ଓ ଭକ୍ତି କରନ୍ତି । ମାତଙ୍କଠାରୁ ଏକଥା ଶୁଣି ଗରୁଡ଼ଙ୍କ ଆଗ୍ରହ ହେଲା ବ୍ରାହ୍ମଣଙ୍କୁ କିପରି ଜାଣିବ ? ଏଥିରେ ଉତ୍ତର ଦେଲେ ଯେଉଁ ଜୀବକୁ ଥଣ୍ଡରେ ଧରି କଣ୍ଠରେ ଗିଳିବୁ, ସେ ଯଦି କଠିନ ଲାଗେ ତଣ୍ଟି ପୋଡ଼େ ତେବେ ବ୍ରାହ୍ମଣ ବୋଲି ଜାଣିବୁ ।

ମାଙ୍କଠାରୁ ମେଲାଣି ନେଇ ଆକାଶ ମାର୍ଗରେ ପକ୍ଷୀବର ଗରୁଡ଼ ଉଡ଼ିବାକୁ ଲାଗିଲେ ଓ ନିଷାଦପୁରରେ ଯାଇଁ ପହଁଞ୍ଚିଲେ । ନିଷାଦ ମାନେ ତାଙ୍କୁ ଦେଖି ଭୟରେ ଏଣେ ତେଣେ ପଳାଇଗଲେ । ଗରୁଡ଼ ଆଁ କରନ୍ତେ, ଏହା ଏକ ବାଟ ଭାବି, ନିଷାଦ ମାନେ ତାଙ୍କ ପାଟିବାଟେ ପେଟରେ ପ୍ରବେଶ କଲେ । ସେହି ସମୟରେ ଜଣେ ବ୍ରାହ୍ମଣ ଗରୁଡ଼ଙ୍କ ପାଟିରେ ପଶିଗଲା । ଗରୁଡ଼ଙ୍କ ତଣ୍ଟି ପୋଡ଼ିବାକୁ ଲାଗିଲା । ଗରୁଡ଼

ଜାଣିପାରିଲେ ଯେ ସେ ଜଣେ ବ୍ରାହ୍ମଣକୁ ବନ୍ଧକରିବାକୁ ଯାଉଛନ୍ତି । ମା'ଙ୍କ କଥା ମନେପଡ଼ିଗଲା । ବ୍ରାହ୍ମଣଙ୍କଠୁଁ ଜାଣିଲେ ଯେ ସେ ଜଣେ ନିଷାଦର ସ୍ତ୍ରୀ (ଶବର) ସହିତ  ପ୍ରେମାସକ୍ତ ହୋଇ ତା'ର ପଛେ ପଛେ ଯାଇଁ ଗରୁଡ଼ ପାଟି ମଧ୍ୟରେ ପ୍ରବେଶ କରିଛି । ଯାହାହେଉ, ଗରୁଡ଼ ଦୟାର୍ଦ୍ର ହୋଇ ବ୍ରାହ୍ମଣ ଓ ତାର ଶବର ପ୍ରେମିକାକୁ ପାଟିରୁ ବାହାର କରି ଦେଲେ ।

ବ୍ରାହ୍ମଣ ଗରୁଡ଼ଙ୍କ ଉପରେ ସନ୍ତୁଷ୍ଟ ହୋଇ ବହୁ ଆଶୀର୍ବାଦ କରି ଶବରୀ ସହ ପ୍ରତ୍ୟାବର୍ତ୍ତନ କଲେ । ଗରୁଡ଼ ପୁଣି ଆକାଶ ମାର୍ଗରେ ଉଡ଼ିବାକୁ ଲାଗିଲେ । ଇତି ମଧ୍ୟରେ ପିତା କଶ୍ୟପ ଋଷି ପୁତ୍ର ଗରୁଡ଼କୁ ଦେଖିଲେ ଓ ବହୁ କୁଶଳ ପ୍ରଶ୍ନ କଲେ । ଉତ୍ତରରେ ଗରୁଡ଼ କହିଲେ ମାତା ବିନତାଙ୍କୁ ଦାସୀତ୍ୱରୁ ମୁକ୍ତି କରିବା ପାଇଁ କଦ୍ରୁଙ୍କ ସନ୍ତାନ ଇଙ୍ଗିତରେ ମୁଁ ସ୍ୱର୍ଗକୁ ଅମୃତ ପାଇଁ ଆସିଛି । ଅମୃତ କଦ୍ରୁଙ୍କ ସନ୍ତାନ ମାନେ ପାନକଲେ ମୋର ମାତା ଦାସୀତ୍ୱରୁ ମୁକ୍ତି ଲାଭ କରିବେ । ଏଣୁ ଅମୃତ କେଉଁଠି ଅଛି, ମତେ କହନ୍ତୁ । ଇତି ମଧ୍ୟରେ ଆକାଶ ମାର୍ଗରେ ଗରୁଡ଼ ପକ୍ଷୀ ଉଡୁ ଉଡୁ ସେ ପିତା କଶ୍ୟପ ଋଷିଙ୍କୁ ଦେଖିଲେ । ବାପ-ପୁଅ ଚିହ୍ନା ଚିହ୍ନି ହେଲେ । ଗରୁଡ଼ଙ୍କୁ ପ୍ରବଳ ଭୋକ ହେଉଥିବା ଓ ସହସ୍ର ସଂଖ୍ୟାରେ ନିଷାଦ ମାନଙ୍କୁ ଭକ୍ଷଣ କରି ପେଟ ନପୂରିଥିବା କଥା କହି ଖାଇବାକୁ ମାଗିଲେ । ଖାଇ ସାରିଲେ ଅମୃତ ସନ୍ଧାନରେ ଯିବେ ବୋଲି କହିଲେ । କଶ୍ୟପ ଋଷି ମହାଅଡୁଆରେ ପଡ଼ିଲେ । ସ୍ୱର୍ଗପୁରରେ ଏତେ ଖାଦ୍ୟ କାହୁଁ ଆସିବ । ଇତ୍ୟବସରରେ ସେ ଦେଖିପାରିଲେ ଗୋଟିଏ ବିରାଟ କାୟ ହସ୍ତୀ ଓ କଚ୍ଛପ ପରସ୍ପର ମଧ୍ୟରେ ପାଣି ଭିତରେ ଟଣା ଟଣି ହେଉଛନ୍ତି । ତାଙ୍କୁ ଗ୍ରାସକରି କ୍ଷୁଧା ମେଣ୍ଟାଇବାକୁ ନିର୍ଦ୍ଦେଶ ଦେଲେ । ହସ୍ତୀ ଓ କଚ୍ଛପ କାହିଁକି ଟଣାଟଣି ହେଉଛନ୍ତି, ଏ ସମ୍ପର୍କରେ ଗୋଟିଏ ଚମତ୍କାର ଗପ ଅଛି । ତାହା ହେଲା :- ପୂର୍ବକାଳରେ ବିଭାବସୁ ନାମକ ଜଣେ ମହର୍ଷି ଥିଲେ । ତାଙ୍କ ସାନ ଭାଇଙ୍କ ନାମ ସୁପ୍ରତୀକ । ଧନ ବଣ୍ଟାକୁ କେନ୍ଦ୍ରକରି ଦୁଇଭାଇଙ୍କ ମଧ୍ୟରେ ଝଗଡ଼ା ହୁଏ । ପରସ୍ପର ଝଗଡ଼ା ନକରିବାକୁ ବିଭାବସୁ ବହୁତ ବୁଝାନ୍ତି । ସେ କହନ୍ତି ଯେ, ଅର୍ଥଲୋଭରେ ଯେଉଁମାନେ ଅଲଗା ହୋଇଯାଆନ୍ତି, ସେମାନେ ସମାଜରେ ଆଦର ପାଆନ୍ତି ନାହିଁ । ଭାତୃ ବିଭେଦ ଦେଖି ଅନେକ ଖଳ ଲୋକ ଭଦ୍ର ପୋଷାକରେ ଝଗଡ଼ାକୁ ତେଜେଇଥାନ୍ତି କିନ୍ତୁ ମଧ୍ୟସ୍ଥଙ୍କ ଭଳି ଉପଦେଶ ଦିଅନ୍ତି । ଏଣୁ ଭ୍ରାତୃକଭେଦର ସୁରାକ ପାଇଲେ ସାଧୁମାନେ ଭ୍ରାତା ମାନଙ୍କୁ ନିନ୍ଦାକରନ୍ତି । ଯେଉଁମାନେ ନିନ୍ଦାକୁ ନମାନନ୍ତି, ସେମାନେ ନାଶ ହୁଅନ୍ତି । ଏପରି ହେଲା

ଯେ ଦୁଇଭାଇଙ୍କର ପରସ୍ପର ଅଭିଶାପ ଯୋଗୁଁ ସୁପ୍ରତୀକ ହସ୍ତୀ ଓ ବିଭାବସୁ କଚ୍ଛପ ରୂପ ଧାରଣ କଲେ । ତଥାପି ଝଗଡ଼ା ପାଣି ଭିତରେ ପରସ୍ପରକୁ ମାରିବାକୁ ବ୍ୟସ୍ତ । ପରସ୍ପର ପରସ୍ପରଠାରୁ ବଳୀୟାନ୍ । ତୁମେ ବର୍ତ୍ତମାନ୍ ଏ ଦୁଇ ଭାଇଙ୍କୁ ଗ୍ରାସ କର ବୋଲି କଶ୍ୟପ ଋଷି ପୁତ୍ର ଗରୁଡ଼ଙ୍କୁ ନିର୍ଦ୍ଦେଶ ଦେଲେ । ନିର୍ଦ୍ଦେଶ ପାଇ ଗରୁଡ଼ ପକ୍ଷୀ ଗଜ, କଚ୍ଛପ ସନ୍ଧାନରେ ବାହାରିଲେ ଓ ହ୍ରଦ ମଧ୍ୟରେ ଉଭୟଙ୍କ ଯୁଦ୍ଧ ଦେଖିଲେ । ପିତାଙ୍କ ନିର୍ଦ୍ଦେଶକ୍ରମେ ପକ୍ଷୀବର ବିଦ୍ୟୁତ୍ ଗତିରେ ଗଜ - କଚ୍ଛପ ଉପରେ ଝାମ୍ପଦେଇ ଦୁହିଁଙ୍କୁ ସୁମେରୁ ଶୃଙ୍ଗ ପର୍ଯ୍ୟନ୍ତ ନେଇଗଲେ ଓ ସେଠାରେ ଥିବା ଦେବବୃକ୍ଷ ସନ୍ନିକଟରେ ପହଁଞ୍ଚିଲେ । ଦେବବୃକ୍ଷ ଗୁଡ଼ିକ ଗରୁଡ଼ଙ୍କ କାୟା ଓ ଶକ୍ତି ଦେଖି ଭୟଭୀତ ହୋଇ, ଗରୁଡ଼ଙ୍କ ମନ ଲୋଭାପାଇଁ ସୁବର୍ଣ୍ଣ ଶାଖା ଓ ଫଳ ସୃଷ୍ଟି କରିଗଲେ । ସେହି ସ୍ଥାନରେ ଏକ ବିରାଟକାୟ ବଟ ବୃକ୍ଷଥାଏ । ଏହି ବୃକ୍ଷର ଶାଖା ଶତଯୋଜନ ପର୍ଯ୍ୟନ୍ତ ବିସ୍ତାର ଲାଭ କରିଥାଏ । ବଟ ବୃକ୍ଷଟି ଦୟାର୍ଦ୍ର ହୋଇ ତାର ଡାଳରେ ବସି ଗଜ-କଚ୍ଛପକୁ ଭକ୍ଷଣ କରିବାକୁ ଗରୁଡ଼ଙ୍କୁ ଆମନ୍ତ୍ରଣ କଲା । ଗରୁଡ଼ ଯେଉଁ ଡାଳରେ ବସିଲେ, ସେ ଡାଳ ଭାଙ୍ଗିଲା । ସେ ଦେଖିଲେ ଗୋଟିଏ ଡାଳ ଧରି ଅନେକ ଋଷି ଝୁଲି ରହି ତପସ୍ୟା ମଗ୍ନ । କାଳେ ଡାଳ ଭାଙ୍ଗିଲେ ଋଷିଙ୍କ ପ୍ରାଣ ନାଶ ହେବ, ଏଥିନିମିତ୍ତ, ସେ ଡାଳ ସହ ଋଷି, ଗଜ ଓ କଚ୍ଛପକୁ ଧରି ଉଡ଼ିବାକୁ ଲାଗିଲେ । ଗୁରୁଭାର ବହି ସେ ଉଡ଼ିବାରୁ ଋଷିମାନେ ତାଙ୍କୁ ଗରୁଡ଼ ବୋଲି ନାମକରଣ କଲେ ।

ଗରୁଡ଼ ଏତେ ଭାରି ଜିନିଷକୁ ଧରି ବସିବାକୁ କେଉଁଠି ଆଶ୍ରୟ ନପାଇବାରୁ ଉଡ଼ି ଉଡ଼ି ଗନ୍ଧମାର୍ଦ୍ଦନ ପର୍ବତ ଶିଖରରେ ପହଞ୍ଚିଲେ । ସେଠାରେ କଶ୍ୟପ ଋଷି ତପସ୍ୟା ମଗ୍ନ । ସେହିସମୟରେ ପୁଅ ଗରୁଡ଼ଙ୍କୁ ଦେଖିଲେ । ମନରେ ଗଭୀର ଆନନ୍ଦ ଜାତ ହେଲା । ବିରାଟ କାୟ ଶରୀର ଓ ଶରୀରରୁ ଅଗ୍ନୀ ସ୍ଫୁଲିଙ୍ଗ ବାହାରୁ ଥାଏ । ଋଷିମାନେ ସେ ଧରିଥିବା ଡାଳରେ ଓହଳିଥିବାର ଦେଖି ପୁଅକୁ ପରାମର୍ଶ ଦେଲେ ଯଦି ଋଷିମାନେ କୋପ କରିବେ, ତାଙ୍କ କୋପାନଳରେ ତୁ ଭସ୍ମ ହୋଇଯିବୁ । ଏଣୁ ସେମାନଙ୍କୁ ଧୀରେ ଧୀରେ ଖସାଇଦେ । ପିତାଙ୍କ ଆଦେଶ ପାଇ ସେ ଋଷିମାନଙ୍କୁ ହିମବନ୍ତ ପର୍ବତରେ ଓହ୍ଲାଇ ଦେଲେ । ଋଷିମାନେ ଗରୁଡ଼ଙ୍କ ଉପରେ ପ୍ରସନ୍ନ ହେଲେ । ଇତ୍ୟବସରରେ ଗରୁଡ଼ ଏହି ଡାଳକୁ କେଉଁଠି ରଖିବେ ବୋଲି ପିତାଙ୍କୁ ପଚାରିଲେ । ପିତା କଶ୍ୟପ ଋଷି କହିଲେ ଯେ, ବରଫରେ ଆବୃତ୍ତ ହୋଇ ଗୋଟିଏ ପର୍ବତ ରହିଛି, ସେଠାକୁ କୌଣସି ନର ଯାଇନାହାନ୍ତି । ସେ ସ୍ଥାନକୁ ଏହି ଡାଳ, ଗଜ ଏବଂ କଚ୍ଛପକୁ ନେଇଯାଅ ।

ପିତାଙ୍କ ନିର୍ଦ୍ଦେଶ କ୍ରମେ ଗରୁଡ଼ ଉଡ଼ିଚାଲିଲେ ସହସ୍ର ଯୋଜନ । ପର୍ବତରେ ସନ୍ଧାନ ପାଇଲେ ଓ ସେଠାରେ ବସିଲେ । ଟିକିଟିକି କରି ଗଜ ଓ କଚ୍ଛପର ମାଂସ ହାଡ଼ ଖାଇ ନିଜର କ୍ଷୁଧା ମେଣ୍ଟାଇଲେ ।

## କଦ୍ରୁଙ୍କ କପଟରୁ ବିନତା ଦାସୀ

ଇତି ମଧ୍ୟରେ ଅମୃତ ପାଇଁ ଦେବତା ରାକ୍ଷସ ଲଢ଼େଇ ଚାଲିଥାଏ ସମୁଦ୍ର ମଧ୍ୟରେ । ସମୁଦ୍ର ମନ୍ଥନରୁ ଜନ୍ମ ନିଏ ଉଚ୍ଚୈଃଶ୍ରବା ଅଶ୍ୱ । ସେ ଅଶ୍ୱକୁ ଦେଖି ଅଶ୍ୱର କି ରଙ୍ଗ ବୋଲି କଦ୍ରୁ ବିନତାଙ୍କୁ ପଚାରିଲେ ଓ ନକହିପାରିଲେ ଦାସୀତ୍ୱ ସ୍ୱୀକାର କରିବାକୁ ପଡ଼ିବ ବୋଲି କହିଲେ । ବିନତା ବିନମ୍ର ଭାବେ କହିଲେ - ଏହାତ ଶ୍ୱେତବର୍ଣ୍ଣ ତେବେ ଏହା ପଚାରିବାର କାରଣ କ'ଣ ? ବିନତା ଶୁକ୍ଳ ବର୍ଣ୍ଣ କହିବାରୁ କଦ୍ରୁ କୃଷ୍ଣ ବର୍ଣ୍ଣ ବୋଲି ଯୁକ୍ତିକଲେ ଓ ପରଦିନ ପରୀକ୍ଷା ହେବ ବୋଲି କହି କଦ୍ରୁ ସର୍ତ୍ତ ରଖିଲେ ଯେ ଲାଞ୍ଜ ଯଦି ଶୁକ୍ଳ ବର୍ଣ୍ଣ ହୋଇନଥାଏ, ତେବେ ବିନତା କଦ୍ରୁର ଦାସୀ ହେବ । ଏଥିରେ ବିନତା ସମ୍ମତି ଦେଲେ । ହେଲେ ଚକ୍ରାନ୍ତଟି ବୁଝି ପାରିଲେନାହିଁ ।

ପରଦିନ କଦ୍ରୁ ତାର ସନ୍ତାନବର୍ଗ ସର୍ପମାନଙ୍କୁ କହିଲା - .ତୁମ୍ଭେମାନେ ଅଶ୍ୱ ଲାଞ୍ଜରେ ଗୁଡ଼ାଇ ହୋଇ ରୁହ ଯେପରିକି ଲାଞ୍ଜଟି ଧଳା ପରିବର୍ତ୍ତେ କଳା ଦେଖାଯିବ ଓ ବିନତା ପରାସ୍ତ ହୋଇ ଦାସୀ ହେବେ । ସେହି ଅନୁସାରେ ଚକ୍ରାନ୍ତ ସଫଳ ହେଲା ଓ ବିନତା କଦ୍ରୁଙ୍କ ଦାସୀତ୍ୱ ସ୍ୱୀକାର କଲେ । ପ୍ରଥମେ କଦ୍ରୁର ପୁତ୍ରମାନେ ଅନିଚ୍ଛା ପ୍ରକାଶ କରିବାରୁ ଜନ୍ମେଜୟଙ୍କ ସର୍ପ ଯଜ୍ଞରେ ପଡ଼ି ଭସ୍ମ ହୋଇଯିବ ବୋଲି ଅଭିସାପ ଦେଲେ । ଅନ୍ୟ ଗୋଟିଏ ପୁତ୍ର କର୍କୋଟକ ମାକୁ ଆଶ୍ୱସନା ଦେଇ କହିଲା ତୁମେ ଅଭିଶାପ ଦିଅନି । ମୁଁ ଘୋଡ଼ାର ଲାଞ୍ଜକୁ ମୋର ଶରୀରରେ ଲୁଚାଇ ରଖିବି ଯେପରି ତାହା କଳା ଦେଖାଯିବ । ଏହି ଚକ୍ରାନ୍ତରେ ବିନତା ପରାସ୍ତ ହୋଇ କଦ୍ରୁଙ୍କ ଦାସୀ ହେଲେ । ଏତଦ୍‌ବ୍ୟତୀତ ବିନତା ଦାସୀ ହେବାପାଇଁ ତାଙ୍କ ପୁତ୍ର ଅରୁଣ ମଧ୍ୟ ଅଭିଷାପ ଦେଇଥିଲେ ।

## ଗରୁଡ଼ଙ୍କ ଅମୃତ ସନ୍ଧାନ

କ୍ଷୁଧାମେଣ୍ଟାଇ ତୃପ୍ତ ହୋଇ ଗରୁଡ଼ ଅମୃତ ସନ୍ଧାନରେ ବାହାରିଲେ । ଏହାଦେଖି ଦେବଲୋକରେ ପ୍ରବଳ ଆଲୋଡ଼ନ ସୃଷ୍ଟିହେଲା । ଇନ୍ଦ୍ରଙ୍କ ପ୍ରିୟ ବଜ୍ର ଅସ୍ତ୍ରରୁ ଜ୍ୱଳନ୍ତା ଅଗ୍ନୀ ଝଲସିଲା । ଧୂମକେତୁ, ଉଲକା ଆକାଶରୁ ଖସିବାକୁ ଲାଗିଲେ । ଦେବ ପୁରରେ ଯେତେ ଅସ୍ତ୍ର ଥିଲେ ପରସ୍ପର ମଧ୍ୟରେ ପିଟାପିଟି ହେଲେ । ଦେବଲୋକର ଫୁଲ ସବୁ ମଉଳିଗଲା । ମେଘ ଆକାରରେ ରକ୍ତ ବର୍ଷା ହେଲା । ଇନ୍ଦ୍ରଙ୍କ ମୁକୁଟ ଉପରେ ଧୂଳିକଣା ଜମା ହୋଇଗଲା । ଦେବତା ମାନଙ୍କ ମଧ୍ୟରେ ଭାଳେଣି ପଡ଼ିଲା । ଇନ୍ଦ୍ର ତାଙ୍କ ଗୁରୁ ବୃହସ୍ପତିଙ୍କ ନିକଟରେ ଗୁହାରୀ କଲେ । ବୃହସ୍ପତି କହିଲେ - କଶ୍ୟପ ଋଷି ଔରୁଷରୁ ଗରୁଡ଼ ଜନ୍ମ ହୋଇଛନ୍ତି । ସେ ଅତି ବଳବାନ ଏବଂ ଅଜେୟ । ସେ ସ୍ୱର୍ଗପୁରକୁ ଆସିଛନ୍ତି ଅମୃତ ନେବାକୁ ।

ସମର୍ଥୋ ବଳିନାଂ ଶ୍ରେଷ୍ଠୋ ହର୍ତୁଂ ସୋମଂ ବିହଙ୍ଗମଃ
ସର୍ବ ସମ୍ଭାବୟାମ୍ୟସ୍ମିନ ମାଧ୍ୟମପି ସାଧୟେତ୍ ।

ଗୁରୁଙ୍କଠାରୁ ଇନ୍ଦ୍ର ଏହାଶୁଣି ଭୟଭୀତ ହୋଇ ଅନ୍ୟ ଦେବତା ମାନଙ୍କୁ ଅମୃତ ଭାଣ୍ଡ ଲୁଚାଇ ଦେବାପାଇଁ ନିର୍ଦ୍ଦେଶ ଦେଲେ । ଦେବତା ମାନେ ପରସ୍ପର ଆୟୁଧ ଧରି ଅମୃତ ଭାଣ୍ଡକୁ ଜଗିଲେ । ପ୍ରଥମେ ସେ ମୁହୂର୍ତ୍ତକ ମଧ୍ୟରେ ଦେବତା ମାନଙ୍କୁ ପରାସ୍ତ କରି ବିଶ୍ୱକର୍ମାଙ୍କୁ ହତ୍ୟାକଲେ ଓ ନିଜର ପକ୍ଷ ବଳରେ ଏପରି କୃତ୍ରିମ ବାତ୍ୟା ସୃଷ୍ଟି କଲେ ଯେ ଧୂଳି ଝଡ଼ରେ ଦେବତାଗଣ ଅନ୍ଧ ହୋଇଗଲେ । ପବନ ମାଡ଼ରେ ବହୁଦେବତା ମୋହଗଲେ । ଇନ୍ଦ୍ରଙ୍କ ନିର୍ଦ୍ଦେଶରେ ପବନ ଦେବତା ଧୂଳି ଝଡ଼କୁ ଉଡ଼େଇ ଦେଲେ ।

## ଦେବତା -ଗରୁଡ଼ ଯୁଦ୍ଧ

ପବନ ଦେବତା ଧୂଳି ଉଡ଼େଇ ଦେବାକ୍ଷଣି ଦେବତାମାନେ ଗରୁଡ଼ଙ୍କୁ ଦେଖିପାରିଲେ ଓ ନିଜ ଅସ୍ତ୍ର ସାହାଯ୍ୟରେ ଆକ୍ରମଣ କଲେ । କିଏ ଗଦା, କିଏ ଧନୁ, କିଏ ତ୍ରିଶୂଳ ଧରି ଆକ୍ରମଣ କଲେ । ପକ୍ଷୀବର ଭ୍ରୂକ୍ଷେପ ନକରି ଦେବତା ମାନଙ୍କ ସହ ଯୁଦ୍ଧ କରୁଥାନ୍ତି । ଗରୁଡ଼ଙ୍କ ନଖ, ଥଣ୍ଟରୁ ଆଘାତ ପାଇ ଦେବତାମାନେ ରକ୍ତାକ୍ତ ହେଲେ । ଭୟରେ ଗନ୍ଧର୍ବ ପୂର୍ବ ଦିଗକୁ, ବସୁ ରୁଦ୍ର ଦକ୍ଷିଣ ଦିଗକୁ, ଦ୍ୱାଦଶ ଦିବାକର

ପଶ୍ଚିମ ଦିଗକୁ, ଦେବବୈଦ୍ୟ ଅଶ୍ୱିନୀ କୁମାର ଉତ୍ତର ଦିଗକୁ ପଳାଇଲେ । ଅନ୍ୟଦେବତା ମାନେ ହଟିବାରୁ ଗରୁଡ଼ ଅମୃତ ଭାଣ୍ଡ ପାଖରେ ପହଞ୍ଚି ଦେଖିଲେ ଅମୃତ ଚାରିପାଖରେ ଉତ୍ତପ୍ତ ଅଗ୍ନୀ ପ୍ରଜଳ୍ପିତ । ସେ ଅଗ୍ନୀର ତେଜ ସୂର୍ଯ୍ୟଙ୍କ ତେଜଠାରୁ ବହୁଗୁଣରେ ତେଜୀୟାନ୍ । ନଦୀଜଳ ବହନକରି ଅଗ୍ନୀ ଶାନ୍ତକଲେ । ଅଗ୍ନୀଶାନ୍ତ ହେବାପରେ ଦେଖିଲେ - ଗୋଟିଏ ଚକ୍ର ଖୁବ୍ ବେଗରେ ଅମୃତ ପାଖରେ ବୁଲୁଛି । ଯିଏ ଅମୃତ ପାଖକୁ ଯିବ, ସେ ଚକ୍ରରେ କଟିଯିବ । ନିଜ ଶରୀରକୁ ଛୋଟ କରି ଚକ୍ରର ଅରମଧକୁ ପ୍ରବେଶ କଲେ । ଦେଖିଲେ ଦୁଇଟି ଅତ୍ୟନ୍ତ ବିଷଧର ସର୍ପ ଅମୃତଭାଣ୍ଡକୁ ଜଗିରହିଛନ୍ତି । ନୟନରେ ତାଙ୍କର ଉତ୍କଟ ବିଷ । ଗରୁଡ଼ ପକ୍ଷୀ ଧୂଳିଝଡ଼ ସୃଷ୍ଟି କଲେ । ଧୂଳି ଝଡ଼ରେ ସର୍ପ ଅନ୍ଧ ହୋଇଗଲେ ଓ ସେ ମହାଆନନ୍ଦରେ ଅମୃତ ଧରି ଆକାଶରେ ଉଡ଼ିଉଡ଼ି ବୈକୁଣ୍ଠପତି ନାରାୟଣଙ୍କ ପାଖରେ ପହଞ୍ଚିଲେ । ନାରାୟଣ ଗରୁଡ଼ଙ୍କ କାର୍ଯ୍ୟ ଓ ନିଷ୍ଠାରେ ସୁପ୍ରସନ୍ନ ହୋଇ ବର ଦେବାକୁ ମନସ୍ଥ କଲେ । ଗରୁଡ଼ ନମ୍ର ଭାବରେ ବର ମାଗିଲେ - ହେ ବ୍ରହ୍ମାଣ୍ଡପତି ମତେ ଏତିକି ବର ଦିଅ, ମୁଁ ସଦାସର୍ବଦା ତୁମର ଦାସ ହୋଇ ରହିବି । ତୁମ୍ଭେ ଯେଉଁଆଡ଼େ ଯିବାକୁ ଇଚ୍ଛାକରିବ, ମୁଁ ତୁମର ବାହନ ହୋଇ ଚାଲୁଥିବି ଓ ତୁମ ସମ୍ମୁଖରେ ମୋର ଆସ୍ଥାନ ଉଚ୍ଚରେ ରହିବ । ଯାହା ଫଳରେ ମୁଁ ତୁମକୁ ସଦା ସର୍ବଦା ଦର୍ଶନ କରିପାରୁଥିବି ଓ ଅନ୍ୟଗୋଟିଏ ବର ହେଲା ମୁଁ ଅମୃତ୍ ନଖାଇ ଅମର ରହିବି ।

**ଆମ ଶାସ୍ତ୍ରକାର ଲେଖିଯାଇଛନ୍ତି :-**

ତୁମ ଆସ୍ଥାନହୁଁ ମୋ ଆସନ ହେବ ଟେକ ।
ଯହିଁରେ ଦେଖିବି ପ୍ରଭୁ ! ତୁମର ଶ୍ରୀମୁଖ ।
ତୁମେ ବଇକୁଣ୍ଠନାଥ ଅଗତିର ଗତି ।
ଭକତରେ ଦୟାକର ଏଇ ମୋ ବିନତି ।

ଗରୁଡ଼ଙ୍କ ବରକୁ ବିଷ୍ଣୁ ସ୍ୱୀକୃତି ଦେଲେ । ଏଥିରେ ଗରୁଡ଼ଙ୍କ ଆନନ୍ଦ କହିଲେ ନସରେ । କିନ୍ତୁ ଗରୁଡ଼ଙ୍କ ଅତି ଗର୍ବ ଭାବ ଦେଖି ଇନ୍ଦ୍ର କ୍ଷୁବ୍ଧ ହେଲେ । କ୍ରୋଧରେ ବଜ୍ର ପ୍ରହାର କଲେ । ଗରୁଡ଼ ତାଚ୍ଛଲ୍ୟ କରି ନିଜର ବଳ ବିଷୟରେ ବର୍ଣ୍ଣନା କଲେ । ସେ କହିଲେ ପର୍ବତ, ବନ, ସମୁଦ୍ରର ଜଳ ସହିତ ପୃଥିବୀକୁ ଏବଂ ତାଉପରେ ରହୁଥିବା ଆପଣଙ୍କୁ

ମୁଁ ଗୋଟିଏ ଡ଼େଣାରେ ଉଠାଇ ଅନାୟସରେ ଉଡ଼ିପାରେ । ଅଥବା ସମ୍ପୂର୍ଣ୍ଣ ଜଗତକୁ ଯଦି ଏକାଠିକରି ମୋ ଉପରେ ରଖିଦିଆଯାଏ ମୁଁ ଅକ୍ଳେଶରେ ବୋହି ନେଇପାରିବି । ଏଥିରୁ ମୋ ବଳ ଜାଣ । ଗରୁଡ଼ଙ୍କ ଦମ୍ଭୋକ୍ତି ବିଷ୍ଣୁ ସହ୍ୟ କରିପାରିଲେ ନାହିଁ । ସେ ମଧ ବିଷ୍ଣୁଙ୍କୁ ତାଚ୍ଛଲ୍ୟ କରି କହିଲେଯେ ଆପଣ ଅଦିତିଙ୍କଠାରୁ ଜାତ ଦେବତାଙ୍କ ମଧ୍ୟରେ ସବୁଠାରୁ ଶକ୍ତିଶାଳୀ ଅଟନ୍ତି । ଆପଣଙ୍କୁ ମୋ ପକ୍ଷରେ ଗୋଟିଏ ଅଂଶରେ ବସାଇ ବିନା କ୍ଳାନ୍ତିରେ ସାରା ବିଶ୍ୱ ବୁଲାଇ ପାରିବି । ଦରକାର ପଡ଼ିଲେ ତୁମକୁ ମଧ ଆହାର କରିପାରିବି । ଗରୁଡ଼ଙ୍କ କଥାଶୁଣି ବିଷ୍ଣୁ ଗରୁଡ଼ଙ୍କ ଉପରେ ତାଙ୍କରଂ ଦକ୍ଷିଣ ହସ୍ତ ସ୍ଥାପନ କରନ୍ତେ, ବିନତା ପୁତ୍ର ଚିତ୍କାର କରି ଉଠିଲେ । ପାତାଳକୁ ଚିପିହୋଇ ଗଲାପରି ଲାଗିଲା । ସେ ଚେତା ଶୂନ୍ୟ ହେବାକୁ ଲାଗିଲେ । ବିଷ୍ଣୁଙ୍କ ଭାରକୁ ସହିନପାରି ପାଦତଳେ ପ୍ରଣାମ କରି ଗରୁଡ଼ କହିଲେ - ଦେବ - । ଆପଣଙ୍କ ଧ୍ୱଜାବାସୀ ମୁଁ ସାମାନ୍ୟ ପକ୍ଷୀ ଅଟେ । ଆପଣଙ୍କ ତେଜ ଓ ବଳରେ ମୋର ଅବସ୍ଥା ସଙ୍କଟାପର୍ଣ୍ଣ । ପୁଣି କେବେ ମୁଁ ଗର୍ବ କରିବିନାହିଁ । ବିଷ୍ଣୁ ସେହି ସମୟରେ ସୁମୁଖ ନାଗକୁ ଗୋଡ଼ରେ ଉଠାଇ ଗରୁଡ଼ଙ୍କ ବକ୍ଷ ସ୍ଥଳରେ ରଖିଦେଲେ । ସେହି ଦିନରୁ ଭୁଜଙ୍ଗାଦଙ୍କ ନିକଟରେ ନାଗ ରହିଆସୁଛି ।

କଶ୍ୟପପୁତ୍ର ଗରୁଡ଼ ବହୁବାର ବିଭିନ୍ନ ସ୍ଥାନରେ ପହଞ୍ଚି ଭକ୍ତଙ୍କ କାମନା ଚରିତାର୍ଥ ଓ ବିଷ୍ଣୁଙ୍କ ଆଦେଶକୁ କାର୍ଯ୍ୟକାରୀ କରିଥାନ୍ତି । ବିଷ୍ଣୁଙ୍କୁ ସ୍ମରଣ ମାତ୍ରେ ଗରୁଡ଼ ଉଭା ହୁଅନ୍ତି । ମହର୍ଷି ଗାଲବଙ୍କ ଆଠଶହ ଶ୍ୟାମବର୍ଣ୍ଣ ଘୋଡ଼ା ଗୁରୁଦକ୍ଷିଣା ସ୍ୱରୂପ ଦେଲା ବେଳେ ଗରୁଡ଼ ତାଙ୍କୁ ସାହାଯ୍ୟ କରିଥିଲେ । ଥରେ ବ୍ରାହ୍ମଣ ଶାପରେ ରାଜା ବସୁ ସ୍ୱର୍ଗପରିତ୍ୟାଗ କରି ପାତାଳ ଗାମୀ ହେଲେ । ଗରୁଡ଼ ବିଷ୍ଣୁଙ୍କ ଆଦେଶରେ ପାତାଳରେ ପଶି ତାଙ୍କୁ ଉଠାଇ ଆଣିଥିଲେ ।

## ରାମାୟଣରେ ଗରୁଡ଼

ରାମାୟଣରେ ଉଲ୍ଲେଖ ଅଛିଯେ, ପଞ୍ଚବଟୀ ବଣକୁ ରାମଚନ୍ଦ୍ର ଯିବା ବାଟରେ ବରଗଛରେ ବସିଥିବା ବିରାଟ କାୟ ଜଟାୟୁ ନାମକ ପକ୍ଷୀକୁ ଦେଖି ଆପଣ କିଏ ବୋଲି ପଚାରିବାରୁ, ଦଶରଥଙ୍କ ସେବକ ବୋଲି ପରିଚୟ ଦେଇ ଦକ୍ଷ ପ୍ରଜାପତିଙ୍କ ଷାଠିଏ କନ୍ୟାଠାରୁ କିପରି ଜୀବଜଗତ ସୃଷ୍ଟିହେଲା, ତାହାର ସୂଚନା ଦେଇ ଶେଷରେ ଗରୁଡ଼ଙ୍କ ବଡ଼ଭାଇ ଅରୁଣଙ୍କର କନିଷ୍ଠ ପୁତ୍ର ବୋଲି ପରିଚୟ ଦେଇଥିଲେ । ରାମ

ବଣକୁ ଯିବାବେଳେ କୌଶଲ୍ୟା ଆଶୀର୍ବାଦ ଦେଇ, ଅମୃତ ଆନୟନ ପ୍ରାର୍ଥୀ ଗରୁଡ଼ଲାଗି ତାର ମା ଯେଉଁ ମଙ୍ଗଳ କାମନା କରିଥିଲେ ତାହା ବର୍ଣ୍ଣନା ଅଛି ।

ରାମ, ଲକ୍ଷ୍ମଣ ଇନ୍ଦ୍ରଜିତ ଦ୍ୱାରା ନାଗ ବନ୍ଧନରେ ପଡ଼ିଥିବା ବେଳେ, ଗରୁଡ଼ ପ୍ରଚଣ୍ଡ ବେଗରେ ଆସି ତାଙ୍କ ପାଖରେ ଉପସ୍ଥିତ ହେବାକ୍ଷଣି, ନାଗମାନେ ଭୟରେ ଛାଡ଼ି ପଳାଇଯାଇଥିଲେ ଓ ରାମ, ଲକ୍ଷ୍ମଣ ନାଗବନ୍ଧନରୁ ମୁକ୍ତ ହୋଇଥିଲେ । ରାମ, ଲକ୍ଷ୍ମଣ ଗରୁଡ଼ଙ୍କୁ କୁଣ୍ଡାଇ ପକାଇଲେ । ଗରୁଡ଼ଙ୍କ ସ୍ପର୍ଶରେ ସେମାନେ ଆହୁରି ବଳବାନ ଓ ତେଜିୟାନ ହୋଇଗଲେ ।

ଗରୁଡ଼ ମନରେ ପ୍ରଶ୍ନ ଜାତ ହେଲା, ରାମନାମ ଜପକଲେ ଲୋକେ ମୁକ୍ତି ପାଆନ୍ତି । କିନ୍ତୁ ସ୍ୱୟଂ ରାମ କିପରି ବନ୍ଦୀହେଲେ ।

ଭବ ବନ୍ଧନ ତେଛୁଟ ହିଂ ନର ଜପିଜା କରନାମ,

ଖର୍ବ ନିସାଚର ବାଁଧେଉ ନାଗପାଂସ ସୋଇରାମ.

ଏ ପ୍ରଶ୍ନ ଉତ୍ତର ପାଇବାପାଇଁ ଗରୁଡ଼ ନାରଦଙ୍କ ନିକଟକୁ ଯାଇଛନ୍ତି । ନାରଦ ବ୍ରହ୍ମାଙ୍କ ନିକଟକୁ, ବ୍ରହ୍ମା ଶିବଙ୍କ ନିକଟକୁ ଏବଂ ଆଶୁତୋଷ ଶିବ ନିଳଗିରି ପର୍ବତରେ ଥିବା ଭୃଷଣ୍ଡି କାକ ନିକଟକୁ ଗରୁଡ଼ଙ୍କ ଶଙ୍କଟ ମୋଚନ ପାଇଁ ଯାଇଛନ୍ତି । ଗରୁଡ଼ଙ୍କ ସଂଙ୍କଟ ମୋଚନପାଇଁ କାକ ଭୁଷଣ୍ଡ ରାମଙ୍କ ଗାଥା ଏପରି ବର୍ଣ୍ଣନା କଲେ ଯେ, ଗରୁଡ଼ଙ୍କ ହୃଦୟରେ ବିଷ୍ଣୁ ଭକ୍ତିର ଫଲ୍‌ଗୁ ଉଜ୍ଜୀବିତ ହୋଇଉଠିଲା ।

ଗରୁଡ଼ଙ୍କ ନାମର ଆକର୍ଷଣ, ବିଷ୍ଣୁଭକ୍ତି, ପୌରୁଷ, ଗୁଣ ଓ ଆକୃତି ଯୋଗୁଁ ଗରୁଡ଼ଙ୍କ ନାମରେ ବହୁ ବସ୍ତୁ ପ୍ରସିଦ୍ଧ ଲାଭ କରିଛି ।

(୧) ଗରୁଡ଼ ସ୍ତମ୍ଭ :- ବିଷ୍ଣୁ ମନ୍ଦିର ସାମନାରେ ଅବସ୍ଥିତ ଗରୁଡ଼ଙ୍କ ପାଇ ଉଦ୍ଦିଷ୍ଟ ସ୍ତମ୍ଭକୁ ଗରୁଡ଼ସ୍ତମ୍ଭ କୁହାଯାଏ । ଏହି ସ୍ତମ୍ଭ ଏକ ଉଚ୍ଚ ଆସନ ବିଶିଷ୍ଟ ଓ ଓ ବିଷ୍ଣୁଙ୍କ ସମ୍ମୁଖରେ ରହିବାପାଇଁ ବରପ୍ରାପ୍ତ ।

(୨) ଗରୁଡ଼ ପୁରାଣ :- ଗରୁଡ଼ ଓ ବିଷ୍ଣୁ ସମ୍ବାଦ ଥାଇ ଏହା ରଚିତ । ଏଥିରେ ସୃଷ୍ଟି ପ୍ରକରଣ, ପ୍ରଜାପତି ଉତ୍ପତି, ପୂଜା ପଦ୍ଧତି, ତର୍ପଣ, ସନ୍ଧ୍ୟା, ଶ୍ରାଦ୍ଧ ପ୍ରଭୃତି

ବର୍ଣ୍ଣନା ସମେତ ଓ ଯମପୁରରେ ପାପୀ ମାନେ କି କର୍ମ କରି କିପ୍ରକାର ଦଣ୍ଡ ପାଇଛନ୍ତି ତାହା ବର୍ଣ୍ଣିତ ହୋଇଛି ।

(୩) ଗରୁଡ଼ ବ୍ୟୂହ :- ଯୁଦ୍ଧରେ ସୈନ୍ୟମାନଙ୍କୁ ଗରୁଡ଼ ଆକୃତିରେ ସଜାଇରଖି ଏକ ବ୍ୟୂହ ରଚନା କରାଯାଏ । ଏହାକୁ ଗରୁଡ଼ ବ୍ୟୂହ କୁହାଯାଏ । ଏହା ଅଗ୍ରଭାଗ ଗୋଳିଆ, ମଧ୍ୟ ଭାଗ ବିସ୍ତୃତ, ଶେଷଭାଗ ପତଳା ହୋଇଥାଏ । ମହାଭାଗ ଯୁଦ୍ଧରେ ଦ୍ରୋଣ ଏହିପରି ଗରୁଡ଼ ବ୍ୟୂହ ରଚନା କରିଥିବାର କୁହାଯାଏ ।

(୪) ଗରୁଡ଼ାସନ :- ଗରୁଡ଼ ବିଷ୍ଣୁଙ୍କ ଆସନ ହୋଇବାରୁ ଏହାକୁ ଗରୁଡ଼ାସନ କୁହାଯାଏ ।

(୫) ଗରୁଡ଼ ମନ୍ତ୍ର :- ଏହି ମନ୍ତ୍ର ଦ୍ୱାରା ସାପବିଷ ହରଣ ହୋଇଥାଏ ଓ ସର୍ପ ଭୟ ମଧ୍ୟ ନିବାରଣ ହୋଇଥାଏ । ଅଗ୍ନି ପୁରାଣରେ ଗରୁଡ଼ ମନ୍ତ୍ରରେ ଉଲେଖ ଅଛି, କଂ ଟଂ ପଂ ଶଂ ବୈନତେୟାୟ ନମଃ । ଏହି ମନ୍ତ୍ରରେ ସାପବିଷ ହରଣ ହୁଏ ।

(୬) ଗରୁଡ଼ ମୁଦ୍ରା :- ହାତଦ୍ୱାରା ପ୍ରଦର୍ଶନ କରାଯାଇଥିବା ମୁଦ୍ରା ବିଶେଷ । ଏହା ବିଷ୍ଣୁଙ୍କ ପୂଜାରେ ପ୍ରୟୋଗ ହୁଏ ।

(୭) ଗରୁଡ଼ ଗଙ୍ଗା :- ବଦ୍ରୀନାଥରେ ରାସ୍ତାରେ ଥିବା ଏକ ତୀର୍ଥ କ୍ଷେତ୍ର ।

(୮) ଗରୁଡ଼ ଧ୍ୱଜ :- ବିଷ୍ଣୁଙ୍କୁ ଗରୁଡ଼ ଧ୍ୱଜ କୁହାଯାଏ । ଧ୍ୱଜ ଅର୍ଥ ପତାକା । ବିଷ୍ଣୁଙ୍କ ପାଖରେ ଗରୁଡ଼ ଧ୍ୱଜପରି ରହୁଥିବାରୁ ଏପରି ନାମକରଣ ହୋଇଛି ।

(୯) ଗରୁଡାସ୍ତ୍ର - ଏକ ଅସ୍ତ୍ରରନାମ । ଶ୍ରୀକୃଷ୍ଣଙ୍କ ପୁତ୍ର ପ୍ରଦ୍ୟୁମ୍ନ ନିଷାଦ ଦେଶକୁ ଯାଇ ସେଠାରେ ବିଜୟ ଉଦେଶ୍ୟରେ ଯେଉଁ ଅସ୍ତ୍ର ପ୍ରୟୋଗ କରିଥିଲେ ତାକୁ ଗରୁଡାସ୍ତ୍ର କୁହାଯାଏ । ଏହି ଅସ୍ତ୍ର ପ୍ରୟୋଗ ବେଳେ ଗରୁଡ଼ ଉପସ୍ଥିତ ଥିଲେ ।

## ଗରୁଡ଼ଙ୍କ ରୂପ ବର୍ଣ୍ଣନା

ଗରୁଡ଼ଙ୍କ ଆକୃତି ଅର୍ଦ୍ଧାଂଶ ମାନବ ଓ ଅପରାଂଶଟି ପକ୍ଷୀ ସଦୃଶ । ଏହାଙ୍କ ମୁଖର ରଙ୍ଗ ଧଳା, ଡ଼େଣା ଲାଲ ଓ ଶରୀର ସୁନେଲି ।

## ଗରୁଡ଼ ଏତେ ବଳିୟାନ କିପରି

କଶ୍ୟପ ଋଷି ଗୋଟିଏ ଯଜ୍ଞ କରିଥିଲେ । ଦେବଋଷି-ଗନ୍ଧର୍ବ ଯଜ୍ଞରେ ସହାୟକ ହୋଇଥିଲେ । ବାଲଖିଲ୍ୟା ଆଦି ଯେତେ ମୁନି ଥିଲେ ସମସ୍ତେ ସମିଧ ପାଇଁ ବଣକୁ ଗଲେ । ଇନ୍ଦ୍ର ନିଜେ କାଠ ବୋହିଥିଲେ । ବାଲଖିଲ୍ୟା ଋଷିମାନେ ପଳାସ ଗଣ୍ଡ ଆଣିଲେ । ଏହିରୂପେ ଦେବର୍ଷି ଓ ରାଜର୍ଷି ମାନେ କାମରେ ଲାଗିଥିଲେ । ବାଲଖିଲ୍ୟା ଋଷିମାନେ ସମିଧ ସଂଗ୍ରହ କରିବା ସମୟରେ ରାକ୍ଷାସ ମାନେ ସେମାନଙ୍କୁ ଗୋଡ଼ାନ୍ତି । କିପରି ରାକ୍ଷସ ନିପାତ ହେବେ, ଦେବଲୋକରେ ଭାଳେଣି ପଡ଼ିଲା । ଋଷିମାନେ କଶ୍ୟପଙ୍କ ଶରଣାପନ୍ନ ହେଲେ । ଜଣେ ଇନ୍ଦ୍ର ସମକକ୍ଷ ବଳବାନ ଇନ୍ଦ୍ର ମର୍ତ୍ତ୍ୟ ମଣ୍ଡଳରେ ଜନ୍ମ ଲାଭ ପାଇଁ । ଦୀର୍ଘଦିନ ଅପୁତ୍ରିକ ରହି ବିନତା ସଦା ସର୍ବଦା ଉଦ୍‌ବିଗ୍ନ ଥିଲେ । ବହୁ ତପସ୍ୟାକରି ଇନ୍ଦ୍ରଙ୍କ ସମକକ୍ଷ ସନ୍ତାନର ଜନନୀ ହେବା ପାଇଁ ତାଙ୍କର ମନ । ଦିନେ ଋତୁସ୍ନାନକରି ବିନତା କଶ୍ୟପଙ୍କ ପାଖରେ ପହଁଚିଲେ ଓ ତାଙ୍କ ସନ୍ତାନପାଇଁ ବର ମାଗିଲେ । ଦୁଇଟି ସନ୍ତାନର ଜନନୀ ହେବାପାଇଁ କଶ୍ୟପ ବରଦେଲେ ଓ କହିଲେ ତୁମଠାରୁ ଯେଉଁ ପକ୍ଷୀ ଜନ୍ମହେବ, ସେ ପକ୍ଷୀମାନଙ୍କ ମଧ୍ୟରେ ଇନ୍ଦ୍ର ହେବ । ସବୁଲୋକରେ ସେ ପୂଜିତ ହେବ । ବିନତା ଯେଉଁ ୨ଟି ପୁତ୍ର ଜନ୍ମଦେଲେ ସେମାନେ ହେଲେ ଅରୁଣ ଓ ଗରୁଡ଼ । ସବୁ ପ୍ରାଣୀଙ୍କ ଠାରୁ ଦୁହେଁ ବଳବାନ । ଅଙ୍ଗହୀନହୋଇ ଅରୁଣ ଜନ୍ମହେଲେ ଓ ସୂର୍ଯ୍ୟଙ୍କ ଉପରେ ସାରଥି ହେଲେ ।

ସୂର୍ଯ୍ୟଙ୍କର ଅନ୍ୟ ରୂପ ମଧ୍ୟ ଜଗନ୍ନାଥ । ରଥଯାତ୍ରା ସମୟରେ ଜଗନ୍ନାଥଙ୍କ ରଥରେ ଅରୁଣ ସାରଥି ଭାବେ ଶୋଭାପାଆନ୍ତି ଓ ଗରୁଡ଼ ପରମ ଭକ୍ତ ବୋଲି ଶ୍ରୀମନ୍ଦିର ସମ୍ମୁଖରେ ଯୋଡ଼ ହସ୍ତରେ ଦଣ୍ଡାୟମାନ ଥାନ୍ତି ।

ନାରାୟଣଙ୍କ ଠାରୁ ବର ପାଇ ଗରୁଡ଼ ତାଙ୍କ ବାହାନ ହେବାପରେ ତାଙ୍କର ମନବଳ ଆହୁରି ବଢ଼ିଯାଇଥାଏ । ଏଥିରେ ଇନ୍ଦ୍ର ଗରୁଡ଼ଙ୍କ ଉପରେ ଇର୍ଷାନ୍ବିତ ହୋଇ ଗରୁଡ଼ଙ୍କୁ ପ୍ରହାର କରନ୍ତେ ଓ ତାଙ୍କର ବଳ ଇନ୍ଦ୍ରଙ୍କୁ ଜଣାଇ ଦେବାକୁ ଇଚ୍ଛାକଲେ । ସେ

ବିଦ୍ରୂପ କରି କହିଲେ ଯେ ମୋର ଗୋଟିଏ ପରରେ ତୁମକୁ ବସାଇ ତ୍ରିଭୁବନ ବୁଲାଇ ପାରିବି । କିନ୍ତୁ ମୋର ପ୍ରକୃତ ବଳ ଆପଣଙ୍କୁ କହିବାକୁ ସଙ୍କୋଚ ଲାଗୁଛି । କାରଣ ମହତ ବ୍ୟକ୍ତି ନିଜର ଗୁଣ କୀର୍ତ୍ତନ କରେନାହିଁ ।

## ଗରୁଡ଼ଙ୍କ ପ୍ରତିଶୋଧ

ଗରୁଡ଼ଙ୍କ ମାତା ବିନତା ସପତ୍ନୀ ଭାବେ କଦ୍ରୁର ଦାସୀ ଥିବାରୁ କଦ୍ରୁର ସନ୍ତାନ ସର୍ପମାନଙ୍କ ଉପରେ ପ୍ରତିଶୋଧ ନେବାକୁ ତାଙ୍କର ସଂକଳ୍ପ । କାରଣ କପଟ କରି କଦ୍ରୁ ବିନତାଙ୍କୁ ଦାସୀ କରି ରଖିଛନ୍ତି ଓ ତାର ସଂତାନବର୍ଗ ସର୍ପମାନେ ମଧ୍ୟ ଅସଭ୍ୟ ବ୍ୟବହାର ପ୍ରକଟ କରୁଛନ୍ତି ।

ଗରୁଡ଼ ଅମୃତ ସହ ସର୍ପମାନଙ୍କ ପାଖରେ ପହଞ୍ଚି ସେମାନଙ୍କୁ ଅମୃତ ଦେବାକୁ କହିଲେ । ଅମୃତ ଖାଇବା ପୂର୍ବରୁ ସେମାନେ ସୁନ୍ଦସ୍ନାନ କରି କୁଶ ଉପରେ ଥିବା ଅମୃତକୁ ଖାଇବାକୁ ପରାମର୍ଶ ଦେଲେ । ସର୍ପମାନେ ସ୍ନାନପାଇଁ ଗଲେ । ଗରୁଡ଼ କୁଶ ଉପରେ ଅମୃତ ରଖିଲେ । ସର୍ପମାନେ ସ୍ନାନ, ଜପ, ତପକରି ମହାଆନନ୍ଦରେ ଫେରିଲା ବେଳକୁ କୁଶ ଉପରେ ଥିବା ଅମୃତକୁ ପାଇଲେନାହିଁ ଅନ୍ୟ କୁଶକୁ ଜିହ୍ୱାରେ ଚାଟିଲେ । ଜିହ୍ୱା ଦୁଇପାଳ ହୋଇଗଲା । ସେହିଦିନ ଠାରୁ ସାପର ଜିଭ ଦୁଇପାଳ ବୋଲି କୁହାଯାଇଛି । ସର୍ପମାନେ ଅମୃତ ନପାଇ ବନ ମଧ୍ୟରେ ବିକ୍ଷିପ୍ତ ହୋଇ ଭ୍ରମଣ କରିବାରେ ଲାଗିଲେ ଓ ଗରୁଡ଼ଙ୍କୁ ସୁଯୋଗ ମିଳିଗଲା ଗୋଟିକପରେ ଗୋଟିଏ ସର୍ପ ଦୈନିକ ଭକ୍ଷଣ କରି ନିଜର କ୍ଷୁଧା ମେଣ୍ଟାଇବାକୁ । ସେ ସମସ୍ତ ସର୍ପଙ୍କୁ ଭକ୍ଷଣ କରିବା ପରେ ମାତାଙ୍କୁ ଦାସୀତ୍ୱ - ବଂଧନରୁ ମୁକ୍ତକଲେ ।

ଇତିମଧ୍ୟରେ କାଳନ୍ଦୀ ହ୍ରଦରେ କାଳୀୟ ନାଗ ଗରୁଡ଼ ଭୟରେ ଆତ୍ମଗୋପନ କରିଥାଏ । ଗରୁଡ଼ଙ୍କ ଦୃଷ୍ଟି ଉହାଡ଼ରେ ରହିବାପାଇଁ ଘଟଣା ଚକ୍ରରେ ସ୍ୱୟଂ ଭଗବାନ ଶ୍ରୀକୃଷ୍ଣଙ୍କ ସହ କାଳିୟର ଭେଟାଭେଟି, ଉଭୟଙ୍କ ମଧ୍ୟରେ ସଂଗ୍ରାମ ଓ ପରିଶେଷରେ କାଳିୟର ଜୀବନ ନାଶ ହୁଏ । ପରମୂର୍ତ୍ତରେ ନାଗ କାମିନୀଙ୍କ କାକୁତି ମିନତିରେ ଶ୍ରୀକୃଷ୍ଣ କାଳୀୟକୁ ଜୀବନ୍ୟାସଦେଇ ପରାମର୍ଶ ଦେଲେ କାଳନ୍ଦୀ ହ୍ରଦ ଛାଡ଼ି ସମୁଦ୍ରରେ ବାସ କରିବାକୁ । ସେଠାରେ ଗରୁଡ଼ଙ୍କ ଭୟ ରହିବ ନାହିଁ । କାଳୀୟ ନାଗ ଶ୍ରୀକୃଷ୍ଣଙ୍କ ଆଶିର୍ବାଦ ସ୍ୱରୂପ ତାଙ୍କ ପଦଚିହ୍ନକୁ ମସ୍ତକରେ ମଣ୍ଡନକରି କାଳନ୍ଦୀ ହ୍ରଦରୁ ସମୁଦ୍ର ମଧ୍ୟକୁ ସପରିବାରେ ପ୍ରବେଶ କଲା ।

## କାଳୀୟନାଗ ଓ ଗରୁଡ଼ ଯୁଦ୍ଧ

କାଳୀୟ ଆଦି ଯେତେ ସର୍ପ ରମ୍ୟକ ଦ୍ୱୀପରେ ଥିଲେ ସେମାନଙ୍କୁ ଗରୁଡ଼ଙ୍କୁ ଆହାର ଯୋଗାଇ କାଳୀୟନାଗ ଆତ୍ମରକ୍ଷାକରି ଆନନ୍ଦରେ ଥାଏ । ପାଳି କରି କାଳୀୟ ନାଗ ଗରୁଡ଼ଙ୍କ ପାଖକୁ ସର୍ପଗୁଡ଼ିକୁ ଗରୁଡ଼ଙ୍କ ଆହାର ପାଇଁ ପଠାଇଥାଏ । ଏହିପରି ସବୁ ସର୍ପ ମୃତ୍ୟୁବରଣ କରିସାରିଲାପରେ ପାଳିପଡ଼େ କାଳୀୟ ନାଗର । କାଳୀୟ ହତାଶ । ମନରେ ସାହାସ ବାନ୍ଧିଲା । ମନେମନେ କହିବାକୁ ଲାଗିଲା, ମୋର ସାନ ଭାଇ ବାସୁକୀ ସମ୍ପୂର୍ଣ୍ଣ ପୃଥିବୀକୁ ତାର ଫଣାରେ ଟେକିରଖିଛି, ମୁଁ ସହସ୍ର ଫଣା ପାଇ କାହିଁକି ଗରୁଡ଼ଙ୍କୁ ଭୟକରିବି ? ଦାମ୍ଭୀକ ପଣରେ ସହସ୍ରଫଣାରୁ ଫୁ ଫୁ କରି ଅଗ୍ନି ଉଦ୍‌ଗିରଣ କରିବାକୁ ଲାଗିଲା । ଇତ୍ୟବସରରେ ଗରୁଡ଼ପକ୍ଷୀ ଦେଖିଲା ତାପାଇଁ ଆହାର ଆଜିନାହିଁ । ରାଗରେ ଜରଜର । ପହଁଞ୍ଚିଲା କାଳୀୟ ପାଖରେ । କାଳୀୟ ଗରୁଡ଼ଙ୍କ ସହ ସଂଗ୍ରାମ କରିବାକୁ ଆଗରୁ ପ୍ରସ୍ତୁତ ଥାଏ । ଉଭୟଙ୍କ ମଧ୍ୟରେ ପ୍ରବଳ ସଂଗ୍ରାମ । କାଳୀୟ ବହୁବାର ଗରୁଡ଼ଙ୍କୁ ଦଂଶନ କଲା । ଏଥିରେ ସ୍ୱୟଂଗରୁଡ଼ଙ୍କର କଣ ବା କ୍ଷତିହେବ । ଗରୁଡ଼ କାଳୀୟକୁ ବୁଲାଇ ବୁଲାଇ ଏପରି ପ୍ରହାର ଦେଲେ ଯେ, କାଳୀୟ ମୂର୍ଚ୍ଛା ହେଲା ।

## କାଳୀୟନାଗ କାଳନ୍ଦୀହ୍ରଦରେ ଆତ୍ମଗୋପନ କଲା କାହିଁକି

ଏକଦା କାଳନ୍ଦୀ ନଦୀ କୂଳରେ ଶୌଭରି ନାମରେ ବ୍ରହ୍ମଋଷି ତପସ୍ୟା କରୁଥାନ୍ତି । ମାଛମାନେ ଦୈନିକ ସେଠା ନଦୀକୂଳରେ ଖେଳୁଥାନ୍ତି । ମୁନି ମାଛମାନଙ୍କୁ ଦେଖି ଆନନ୍ଦ ପାଆନ୍ତି । ଦିନେ ପ୍ରଭାତରେ ମାଛମାନଙ୍କ ମଧ୍ୟରେ ରାଜା ରୋହିମାଛ ଖେଳୁଥାଏ । ମୁନି ସେ ଖେଳକୁ ଦେଖି ଆନନ୍ଦ ପାଉଥାନ୍ତି । ଇତ୍ୟ ବସରେ ଗରୁଡପକ୍ଷୀ ନଦୀ ତଟରେ ଉପସ୍ଥିତ ହୋଇ କାଳନ୍ଦୀଜଳକୁ ଚାହିଁ ମାଛମାନଙ୍କୁ ଭକ୍ଷଣ କରିବାକୁ ଇଚ୍ଛାପ୍ରକାଶ କରନ୍ତେ, ମୁନିଶ୍ରେଷ୍ଠ ତାହା ବାରଣ କଲେ ଓ କହିଲେ ଏମାନେ ମୋର ଅତି ପ୍ରିୟ । ଏମାନଙ୍କୁ ଭକ୍ଷଣ କରନାହିଁ । ମୁନିଙ୍କ କଥା ନଶୁଣି, ଗରୁଡ ପକ୍ଷୀ ରୋହି ମାଛଟିକୁ ଗିଳିଦେଲା । ମୁନିଙ୍କ କୋପ ବୃଦ୍ଧିହେଲା । କୋପ ବଳରେ ଅଭିଶାପ ଦେଲେ, ତୋ ଜୀବଦସା ଭିତରେ କେବେ କାଳୀୟ ହ୍ରଦରେ ପଶିବୁନାହିଁ । ଯଦି ଦୁଷ୍ଟପଣରେ ପଶିବୁ, ଭସ୍ମ ହୋଇଯିବୁ । ସେଥିପାଇଁ ଗରୁଡ କାଳୀୟ ହ୍ରଦକୁ ଯାଆନ୍ତି ନାହିଁ । ଏହି ହ୍ରଦ କାଳୀୟ ନାଗର ନିରାପଦ ସ୍ଥାନ ଥିଲା ।

## ବୈକୁଣ୍ଠପୁରରେ ବିଷ୍ଣୁ-ଗରୁଡ଼ କଥୋପକଥନ

ଗରୁଡଙ୍କୁ ଭଗବାନ ବିଷ୍ଣୁ ତାଙ୍କର ବାହାନ ଓ ପ୍ରିୟ ଭକ୍ତ ଭାବେ ଗ୍ରହଣ କଲାପରେ ପରସ୍ପର ପ୍ରତି ଶ୍ରଦ୍ଧା ଭକ୍ତି ଉଦ୍ରେକ ହେଲା ।ସେହି ସୁଯୋଗରେ ପଣ୍ଡିତ ଗରୁଡ ମର୍ତ୍ତ୍ୟଲୋକର ଉଦ୍ଧାର ପାଇଁ ଅନେକ ପାଣ୍ଡିତ୍ୟପୂର୍ବ ପ୍ରଶ୍ନ ବିଷ୍ଣୁଙ୍କୁ କହନ୍ତି ଓ ତାହାର ଉତ୍ତର ଓ ପ୍ରତିକାର ବିଷୟରେ ବିଷ୍ଣୁ ବୁଝାନ୍ତି । ବୈକୁଣ୍ଠ ପୁରରେ ଦୁହିଁଙ୍କ ମଧ୍ୟରେ ହୋଇଥିବା କେତେକ ଉକ୍ତି ବିଶେଷ'କରି ଯମ ଯାତନା କାହିଁକି ହୁଏ, କେଉଁ କର୍ମକୁ ପାପ କୁହାଯାଏ, ତାର ଫଳ କ'ଣ ଓ ପିତୃଲୋକଙ୍କୁ ଅବଜ୍ଞା କଲେ କ'ଣ ହୁଏ ଏବଂ ଏହି ଦୁର୍ଷମରୁ କିପରି ମୁକ୍ତି ମିଳେ, ଏସବୁ ତତ୍ତ୍ୱ ବିଶଦଭାବରେ ସ୍ଥାନ ପାଇଛି ।

ଦିନେ ବୈକୁଣ୍ଠପୁରରେ ବିଷ୍ଣୁ ସିଂହାସନରେ ଉପବିଷ୍ଟ ଥିବା ବେଳେ, ଗରୁଡ ସଷ୍ଟାଙ୍ଗ ପ୍ରଣିପାତ କରି କହିଲେ ଆପଣ ଜଗତ୍‌ପତି । ଆପଣଙ୍କୁ ଯେଉଁମାନେ ଭକ୍ତିକରନ୍ତି ସେମାନେ ବୈକୁଣ୍ଠ ଭୋଗ କରନ୍ତି । ଆପଣଙ୍କୁ ଯିଏ ଭକ୍ତିନକରି ପାପକରିବାରେ ଲିପ୍ତ ରହନ୍ତି, ସେ ଯମପୁର ଯାଆନ୍ତି । ଦୟାକରି କେଉଁ ପାପକର୍ମ ପାଇଁ କେଉଁଦଣ୍ଡ ମିଳେ, ପ୍ରକାଶ କରନ୍ତୁ । ଗରୁଡଙ୍କ କଥାରେ ପ୍ରସନ୍ନ ହୋଇ ଭଗବାନ ବିଷ୍ଣୁ କହିବାକୁ ଲାଗିଲେ .....

ଯମପୁର ଅତି ଦୁର୍ଗମ । ସେଠାରେ ସୂର୍ଯ୍ୟ କିରଣ ପଡ଼େନାହିଁ । ବହୁ ହିଂସ୍ରଜନ୍ତୁ ବସବାସ କରନ୍ତି । ବିଷଧର ସର୍ପ କୀଟମାନେ ଦଂଶନ କରି ପୀଡ଼ା ଦେଇଥାନ୍ତି । ଯମଦୂତ ମାନେ ବିଭିନ୍ନ ମାରଣାସ୍ତ୍ରରେ ସୁସଜ୍ଜିତ ହୋଇ ପାପୀ ମାନଙ୍କୁ ଆକ୍ରମଣ କରନ୍ତି ।

ଯେଉଁ ବ୍ୟକ୍ତିମାନେ ପରକୁ ହିଂସା କରନ୍ତି, ଶାସ୍ତ୍ର ନିନ୍ଦାକରନ୍ତି, କପଟରେ କହିଥାନ୍ତି, ସାଧୁଙ୍କୁ ଉପହାସ କରି ଟେକା ପଥର ଫୋପାଡ଼ନ୍ତି, ଗୁରୁ ଗୁରୁଜନଙ୍କୁ ମାନନ୍ତି ନାହିଁ, ଦୈନିକ ମଦ ମାଂସ ଭକ୍ଷଣ କରନ୍ତି, ପର ସ୍ତ୍ରୀ ହରଣ କରନ୍ତି, ନିଜକୁ ବଡ଼ ବୋଲି କହୁଥାନ୍ତି, ବଳତ୍କାରରେ ପରଧନ ଲୁଣ୍ଠନ କରନ୍ତି, ନିଜ ସ୍ତ୍ରୀକୁ ଛାଡି ବେଶ୍ୟାଶକ୍ତ ହୁଅନ୍ତି, ଗୋଚର ଭୂମିକୁ ଜବର ଦଖଲ କରନ୍ତି, ସେହିମାନେ ନର୍କପୁରକୁ ଆସିଥାନ୍ତି । ଯମଦୂତମାନେ ସେମାନଙ୍କୁ ବାନ୍ଧି ତପ୍ତ ତେଲ କୁଣ୍ଡରେ ବୁଡାନ୍ତି, ମାଡ଼ ଦିଅନ୍ତି, ଖାଇବାକୁ ଦୁଇବର୍ଷ ଦିଅନ୍ତି ନାହିଁ ।

ଚଉରାଅଶୀ କୋଟି ନର୍କ କୁଣ୍ଡ ଅଛି । କର୍ମାନୁସାରେ ନର୍କକୁଣ୍ଡରେ ପାପୀମାନେ ଘାଣ୍ଟି ହୁଅନ୍ତି । ଯମରାଜ ସିଂହାସନ୍‌ରେ ବସି ପାପ-ପୁଣ୍ୟ ବିଚାର କରନ୍ତି ଓ ଏହି ଦଣ୍ଡ ଦେଇଥାନ୍ତି । ଯମରାଜ ଦରବାରରେ ଚିତ୍ରଗୁପ୍ତ ପାଞ୍ଜିଧରି ବସିଥାନ୍ତି । କାହାର କେତେବେଳେ କାଳ ହେଲା, ସେ ଯମଦୂତମାନଙ୍କୁ ଜଣାଇ ଦିଅନ୍ତି ଓ ତତ୍‌ଅନୁସାରେ ସେମାନେ ପାପୀକୁ ଧରିଆଣି ଯମରାଜଙ୍କ ସମ୍ମୁଖରେ ହାଜର କରନ୍ତି । ପାପର ଗୁରୁତ୍ୱ ଉପରେ ଦଣ୍ଡ ବ୍ୟବସ୍ଥା କରିଥାନ୍ତି । ଯମରାଜଙ୍କ ଭବନର ପୂର୍ବ, ପଶ୍ଚିମ ଓ ଉତ୍ତର ଦ୍ୱାରଦେଇ ସାଧୁମାନେ ପାରହୋଇଯାନ୍ତି ଓ ପାପୀମାନେ କେବେଳ ଦକ୍ଷିଣ ଦ୍ୱାରଦେଇ ବୈତରଣୀ ନଦୀ ଗର୍ଭରେ ଉବେଇ ଟୁବେଇ ହୁଅନ୍ତି । ଯେ ବ୍ରାହ୍ମଣ ବଧ କରେ, ଗୋହତ୍ୟା କରେ, ବାଳକ ଅପହରଣ ବା ବିନାଶ କରେ, କୂଟ କପଟରେ ହତ୍ୟା କରେ, ଗୋପନ ପ୍ରଣୟ ସହ ଗର୍ଭନାଶକରେ, ଗୁରୁ ଓ ବ୍ରାହ୍ମଣର ଧନ ଅପହରଣ କରେ, ଋଣ କରି ପରିଶୋଧ ନକରେ, ବିଶ୍ୱାସୀ ଲୋକକୁ କପଟ କରି ବିଷ ଦିଏ, ଏମାନଙ୍କଠାରୁ ବଡ଼ ପାପୀ କେହି ନାହିଁ । ସେମାନେ ଦକ୍ଷିଣ ଦ୍ୱାର ଦେଇ ବୈତରଣୀକୁ ଯାଇଥାନ୍ତି । ଚଉରାଶି କୋଟି ନର୍କ ମଧ୍ୟରୁ ବୈତରଣୀ ସର୍ବଶ୍ରେଷ୍ଠ ନର୍କ । ମହାପାପୀ ମାନେ ବୈତରଣୀ ନଦୀରେ ଦଣ୍ଡ ଭୋଗିଥାନ୍ତି । ରୌରବ ନର୍କ ଅନ୍ୟତମ ଦ୍ୱିତୀୟ ବୃହତ୍ତମ ନର୍କ । ଯିଏ ମିଥ୍ୟା ସାକ୍ଷୀ ଦିଏ, କପଟରେ ନିଜକୁ ଧାର୍ମିକ ବୋଲି କହି ପାପ ସମ୍ପତ୍ତି ହରଣ କରେ, ଦୈନିକ ଜୀବହତ୍ୟା କରେ, ଉପକାରୀ ବୃକ୍ଷଗୁଡିକୁ ଛେଦନ କରେ, ଫୁଲ ଗଛଗୁଡିକୁ ନଷ୍ଟ କରିଦିଏ, ବିଧବା ନାରୀସହ ପ୍ରିତୀ କରେ, ଯେଉଁନାରୀ ସ୍ୱାମୀକୁ କଟୁ କଥା କହି ପର ପୁରୁଷ ସହ ରମଣ କରେ ସେହିମାନେହିଁ ସେହି ନର୍କ ବାସ କରନ୍ତି । ରୌରବ ନର୍କରେ ପୁଜ, ବିଷ୍ଠା, ଆଦି ଭରି ରହିଥାଏ, ପାପୀମାନଙ୍କୁ ସେଠାରେ ପକାଇ ଯମଦୂତଙ୍କ ଦ୍ୱାରା ନିର୍ଯ୍ୟାତନା ଦିଆଯାଏ । ବହୁ ବର୍ଷ ସେହି ନର୍କରେ ଘାଣ୍ଟିହେବା ପରେ ନିଚ ଯୋନିରେ ପୁଣି ଜନ୍ମ ନିଅନ୍ତି ।

କୃମିପାକ ବୋଲି ଆଉଗୋଟେ ନର୍କ ଅଛି । ଯିଏ ସ୍ତ୍ରୀମାନଙ୍କୁ ଅଯଥାରେ ପୀଡ଼ା ଦିଏ ଅତିଥି, ଦେବତା ମାନଙ୍କୁ ପୂଜା ନକରେ, ମୁଁ ବଡ଼ ବୋଲି କହେ, ନିରୀହ ଲୋକଙ୍କୁ ଠକେ, ସେହି ନର୍କରେ ସେମାନେ ପଡ଼ନ୍ତି । ସେହି ନର୍କରେ ବିଷାକ୍ତ କୃମି ରହିଥାନ୍ତି । ପାପୀମାନଙ୍କ ଶରୀରକୁ ଦଂଶନ କରିଥାନ୍ତି ।

ଯିଏ କୂଅ, ଜଳଶୟ ଆଦି ଭାଙ୍ଗିଥାଏ, ପ୍ରଜାଙ୍କ ଘର ଭାଙ୍ଗି ଦିଏ, ଗୁରୁ, ବାଳକ, ଭୃତ୍ୟ, ବୃଦ୍ଧ ବ୍ୟକ୍ତି, ନିଜ ସ୍ତ୍ରୀକୁ ପ୍ରହାର କରେ ଦାସୀ ଓ ଶୁଦ୍ର ରମଣୀ ସହ ରମଣ କରେ, ଦେବତା ପୂଜାରେ ହେଳାକରେ, ବ୍ରାହ୍ମଣ ହେଲେବି ସେ ନର୍କ ଗାମୀ ହୁଏ ଓ ଏକ ଶହ ବର୍ଷ ନର୍କ ଯନ୍ତ୍ରଣା ଭୋଗେ ।

ଚତୁର୍ଦ୍ଦଶୀ, ଅମାବାସ୍ୟା, ପୂର୍ଣ୍ଣିମା, ସଂକ୍ରାନ୍ତି, ନମାନି ଯିଏ କାମିନୀ ସହବାସ କରେ, ଶ୍ରାଦ୍ଧରେ ଓ ଦିନରେ ରତିକ୍ରିୟାକରେ, ଜ୍ୱଳନ୍ତା ଅଗ୍ନୀରେ ମଳ ମୂତ୍ର ତ୍ୟାଗ କରେ, ସେ ମହା ରୌରବ ନର୍କରେ ଶତ ସମ୍ବତ୍ସର ଯାଏ ପଡ଼ିରହି ଥାଏ ।

ବିନା ଅପରାଧରେ ପ୍ରାଣୀକୁ ଯିଏ ଦଣ୍ଡ ଦିଏ, ଆଶୀ ଦେଇ ଭଣ୍ଡାଏ, ବାସଗୃହରେ ନିଆଁ ଲାଗାଇ ଦିଏ, କ୍ଷୁଧାର୍ତ୍ତଠାରୁ ଆହାର ଛଡ଼ାଏ ସେ ତାମସ ନର୍କଗାମୀ ହୁଏ । ତାମସ ନର୍କ ଅଗ୍ନିପରି ଉତପ୍ତ । ଏହିପରି ଭାବେ ପାପୀମାନେ ଯୁଗାନ୍ତ ପ୍ରଳୟ ପର୍ଯ୍ୟନ୍ତ ଯାତନା ଭୋଗ କରନ୍ତି ବୋଲି ବିଷ୍ଣୁ ଗରୁଡ଼କୁ କହିଛନ୍ତି ।

## ପ୍ରଳୟ କ'ଣ

ବ୍ରହ୍ମା ଏକଦିନ ଭୋଗ କଲେ, ମନୁଷ୍ୟ ପକ୍ଷେ ତାହା ପ୍ରଳୟ ହୁଏ । ବ୍ରହ୍ମାଙ୍କର ଶତବର୍ଷ ହେଲେ ମନୁଷ୍ୟର ମହା ପ୍ରଳୟ ହୁଏ । ବ୍ରହ୍ମାଙ୍କ ଏକଦିନ ମଧ୍ୟରୁ ରାତ୍ରକାଳରେ ଶୟନ ସମୟରେ ଖଣ୍ଡ ପ୍ରଳୟ ହୁଏ । ନିଦଭାଙ୍ଗିଲେ ପୃଥିବୀ ଥୟ ହୁଏ । ଏହିପରି ଶହେବର୍ଷ ପ୍ରଳୟ ଶେଷରେ ବ୍ରହ୍ମା ପୁଣି ସୃଷ୍ଟି ସର୍ଜନା କରନ୍ତି । ତାଙ୍କ ଆଦେଶରେ ପୂର୍ବକର୍ମାନୁସାରେ ପ୍ରାଣୀମାନେ ପୁର୍ନଜନ୍ମ କରିଥାନ୍ତି । ଯିଏ ଯେଉଁ ପାପ କରେ, ପାପାନୁସାରେ ରୋଗ ଭୋଗନ୍ତି ଓ ନିଚ ଯୋନିରେ ଜନ୍ମ ନିଅନ୍ତି । କିନ୍ତୁ ସଭକ୍ତି ଗରୁଡ଼ ଦର୍ଶନ ଯୋଗୁଁ ଯମଦଣ୍ଡ ହୁଏନାହିଁ ।

## ପାପାନୁସାରେ ରୋଗର ଉତ୍ପତ୍ତି

### ପୂର୍ବ ଜନ୍ମରେ ପାପ କଲେ କେଉଁଠାରେ ଉତ୍ପତି ହୁଏ ଓ କେଉଁ ଜନ୍ମ ମିଳେ

ବ୍ରାହ୍ମଣକୁ ହତ୍ୟା-ଯକ୍ଷ୍ମା-ଚଣ୍ଡାଳ ଘରେ ଜନ୍ମ, ଗୋ ହତ୍ୟା-କୁଷ୍ଠ-ଚଣ୍ଡାଳ ଘରେ ଜନ୍ମ, ନିଜ ପୁତ୍ରକୁ ହତ୍ୟା-ଗଳିତ କୁଷ୍ଠ-ଚଣ୍ଡାଳ ଘରେ ଜନ୍ମ, ଗୁରୁ ପନ୍ନୀ ହରଣ-ନପୁଂଶକ-ଶବର ଘରେ ଜନ୍ମ, ଗର୍ଭ ନଷ୍ଟ-ହସ୍ତ ଚର୍ମ ଯାଦୁ, ପଶୁ ପରି ମାଂସ ଆହାର-ରକ୍ତ କୁଷ୍ଠ, ଅଭକ୍ଷ ଭକ୍ଷଣ-ପାଦଜଂଘ ବିକଳାଙ୍ଗ, ବ୍ରାହ୍ମଣ ହୋଇ ଇନ୍ଦ୍ରିୟ ସଂଜମୀ ନହେଲେ-ଜଳ ଉଦରି, ସୁସ୍ୱାଦୁ ଭୋଜନ ଏକୁଟିଆ କଲେ-ଗଳଗଣ୍ଡ, ଅଶୁଦ୍ଧ କାଳରେ ପିଣ୍ଡ ଦାନ-ଚିତ୍ରକୁଷ୍ଠ, ଗୁରୁଙ୍କୁ ଅବଜ୍ଞା-ଅପସ୍ମାର, ବେଦ ନିନ୍ଦା କଲେ-ପାଣ୍ଡୁ, ମିଥ୍ୟା ସାକ୍ଷୀ-ମୂକ, ବିବାହ ପ୍ରସଙ୍ଗ ଭଙ୍ଗ-ଓଷ୍ଠହୀନ, ପୁସ୍ତକ ଚୋରି-ଅନ୍ଧ, ଗୋରୁଙ୍କୁ ଗୋଇଠା ମାଡ଼-ଛୋଟା, ବ୍ରାହ୍ମଣକୁ ଗୋଇଠା-ପଙ୍ଗୁ, ଭୋଜନରେ ବିଷ ଦେଲେ-ଜଡ଼, ଗନ୍ଧ ଦ୍ରବ୍ୟ ଚୋରି-ଚୁଚୁନ୍ଦ୍ରା ଜନ୍ମ, ମାଂସ ଚୋରି-ଶାଗୁଣା, ଲୁଣ ଚୋରି-ପିମ୍ପୁଡ଼ି, ପୁଷ୍ପ ମୂଳ ଚୋରି-ମର୍କଟ, ତୁଳା ଚୋରି-ମେଣ୍ଢା, ଖଣ୍ଡବୃତ୍ତି-କଂସାଇ,ବିଷପାନରୁ ଆତ୍ମହତ୍ୟା-କୃଷ୍ଣ ସର୍ପ/ତିନି ପୁରରେ ବାସ ନାହିଁ,ବିଷ୍ଣୁଙ୍କୁ ସମର୍ପଣ ନକରି ଆହାର କଲେ-କୁମ୍ଭକାର, ଅଶୁଚି ହୋଇ ଭୋଜନ କରିବା-ବ୍ୟାଘ୍ର, ବ୍ରାହ୍ମଣ ହୋଇ ସଂନ୍ଧ୍ୟାଅର୍ଚ୍ଚନା ଓ ଗାୟତ୍ରୀ ଉଚ୍ଚାରଣ ନକଲେ-ମାଛ, ବିଦ୍ୱାନ ହୋଇ ବିଦ୍ୟାଦାନ ନକଲେ-ବଳୀବର୍ଦ୍ଧ ହୁଏ, ଶିଷ୍ୟ ଗୁରୁ ସେବା ନକଲେ-ଗଧ, ଗୁରୁ ବ୍ରାହ୍ମଣ ନିନ୍ଦା-ବ୍ରହ୍ମ ରାକ୍ଷାସ, ମିତ୍ର ଦ୍ରୋହି-ଗୃଧ୍ର, କପଟରେ ଅନ୍ୟ ଧନ ଲୁଣ୍ଠନ କଲେ-ପେଚା, ସ୍ୱଜାତି ମଧ୍ୟରେ ବିଭାହ-କପୋତ, କ୍ରୋଧରେ ନିଜ ପନ୍ନୀଙ୍କୁ ଛାଡପତ୍ର-ଚକ୍ରବାକ ପକ୍ଷୀ, ପିତାମାତା, ଗୁରୁଜନ, ବନ୍ଧୁ, ଭାଦୃଙ୍କୁ ଶତୃଭାବେ ଦେଖିଥିବା ବ୍ୟକ୍ତି-ମାତା ଗର୍ଭରେ ମୃତ୍ୟୁ, ଯେଉଁ ନାରୀ ଦିବାରାତ୍ରି କଳହ କରେ ଓ ଶାଶୁ ଶ୍ୱଶୁରଙ୍କୁ ତୁଛ ଭାଷାରେ କହିଥାନ୍ତ-କର୍ଦ୍ଦମ ଯୁକ୍ତ ଜଳରେ ପୋକ ହୋଇ ରହି ଦୁଃଖ ଭୋଗ କରେ,ଯେଉଁ ସ୍ତ୍ରୀ ନିଜ ପତି ସହ କଳହ କରେ-ଉକୁଣି, କାମ ଭୋଗ ଚରିତାର୍ଥ କରିବା ପାଇଁ ବୃଦ୍ଧ ସ୍ୱାମୀକୁ ତ୍ୟାଗ କରି ପର ପୁରୁଷ ସହ ରମଣ କରିଛି-ଝିଟିପିଟି ବା ବାଦୁଡ଼ି ବା ଦୋମୁଣ୍ଡିଆ ସର୍ପ, ନିଜ ଗୋତ୍ର ପ୍ରାଣୀକୁ ହତ୍ୟା କଲେ-ଝିଅ ଜନ୍ମ, ନିଜ ଗୋତ୍ର ରମଣୀ ସହ ଯେଉଁ ନର ରମଣ କରେ-ଭାଲୁ, ବିଟପି ରମଣୀ ସହ ପ୍ରିତୀ-ପିଶାଚ, ଅନୁଢ଼ା ବାଳିକା ପ୍ରିତୀ-ଅଜଗର ସର୍ପ, ରାଜ ପନ୍ନୀ ହରଣ କଲେ-ଓଟ, ମିତ୍ର ପନ୍ନୀ ହରଣ-କୈବର୍ତ୍ତ, ସୁରାପାନ କରି ନିଜ ଧର୍ମନାଶ କଲେ-ଶ୍ୱାନ/ଶୃଗାଳ, ବ୍ରହ୍ମସ୍ୱ ହରଣ-

ଗୃହବାସ ଅଗ୍ନିଦଗ୍ଧା ଓ ନିସନ୍ତାନ ପ୍ରାପ୍ତି, ଭୟରେ ପଳାଉଯାଉଥିବା ବ୍ୟକ୍ତିଙ୍କୁ ଆକ୍ରମଣ କଲେ-ନରହତ୍ୟା ଅପରାଧ,

ଏହି ପରି କର୍ମ ଯୋଗୁଁ ପାପୀମାନେ ପାପ ଯୋନିରେ ଜନ୍ମ ନିଅନ୍ତି । ନାନା ପ୍ରକାର ରୋଗରେ ଘାଣ୍ଟି ହୁଅନ୍ତି, ଆନନ୍ଦରେ ମୁଠାଏ ଖାଇବାକୁ ପାଆନ୍ତି ନାହିଁ । ନାନା ପ୍ରକାର କୁତ୍ସିତ ଭାଷା ଶୁଣିବାକୁ ପଡ଼େ । ଏହି ଭଳି କର୍ମରୁ ମୁକ୍ତି ପାଇଁ ଭଗବାନ ସ୍ୱର୍ଗପୁରରେ ଗରୁଡ଼ଙ୍କୁ କହିଛନ୍ତିକି ବିଦ୍ୱାନ ବ୍ରାହ୍ମଣ ଦ୍ୱାରା ଦେବାର୍ଚ୍ଚା କର୍ମ ଯଜ୍ଞାଦି ପ୍ରଭୃତି ସମ୍ପନ୍ନ କରି ଦାନ କରିବାକୁ ପଡ଼ିବ । ଭକ୍ତିଚିତ୍ତ ରେ ବିଷ୍ଣୁଙ୍କୁ ସ୍ମରଣ କରି ଯଥା ଶକ୍ତି ବ୍ରାହ୍ମଣକୁ ଦକ୍ଷିଣା ଦେବ ଓ ତାଙ୍କ ପାଦ ତଳେ ପଡ଼ି ନିଜ କୃତ୍ୟ ଦୋଷ ପାଇଁ କ୍ଷମା ମାଗିବ ଓ ପାଦ ଧୂଳି ନେଇ ମଥାରେ ବୋଳିବ । ଏହି ପରି କଲେ ପାପ ବିନାଶ ହୁଏ ଓ ପର ଜନ୍ମରେ ସୁଖ ପ୍ରାପ୍ତି ହୁଏ । କିନ୍ତୁ ବେଦ ବିଦ୍ୟା ନଜାଣିଥିବା ବ୍ୟକ୍ତିକୁ ଦାନ ଦେବା ନିଷ୍ଫଳ ହୁଏ । ଯେଉଁ ବ୍ୟକ୍ତି ହରିନାମ ନିୟମିତ କରୁଥିବ, ମହାମନ୍ତ୍ର ଜପୁଥିବ, ଈଶ୍ୱରଙ୍କୁ ସମସ୍ତ ଅର୍ପଣ କରୁଥିବ, ସେ ସ୍ୱର୍ଗଧାମରେ ମହା ସୁଖରେ ଚଳିବ ।ଏସବୁ କର୍ମମାନ ନକଲେ ମହାପ୍ରଳୟ ସୃଷ୍ଟି ହେବା ପର୍ଯ୍ୟନ୍ତ ଯନ୍ତ୍ରଣା ପାଏ ଓ ପ୍ରଳୟ ଶେଷରେ ବିଷ୍ଣୁଙ୍କ ସହ ଲୀନ ହୋଇ ନୂଆ ଜନ୍ମ ଲାଭ କରେ ।

ବ୍ରହ୍ମାଣ୍ଡରେ ସୁଖରେ ରହିବା ପାଇଁ ଭଗବାନ ଗରୁଡ଼ଙ୍କୁ ପରାମର୍ଶ ଛଳରେ ଏସବୁ କହି ପୁଣି ସୂଚାଇଲେଯେ ଦୈନିକ ଦେବତା- ବ୍ରାହ୍ମଣ ମାନଙ୍କୁ ପୂଜା କରିବ । ସାଧୁ ସନ୍ଥମାନଙ୍କୁ ପୂଜା କରିବ । ଶିବ ପୂଜା କରି ଶିବଙ୍କ କୃପାରେ ପୁତ୍ର ଲାଭ କରିବ । ସେହି ପୁତ୍ର ବଂଶ ରକ୍ଷା କରିବ । ଗର୍ଭବତୀ ନାରୀ ପୁରାଣ ଶ୍ରବଣ କଲେ ଗର୍ଭସ୍ଥ ସନ୍ତାନ ନର୍କ ଦୁଃଖରୁ ନିସ୍ତାର ପାଏ । ମାତାର ସମସ୍ତ ପାପ କ୍ଷୟ ସଙ୍ଗେ ସଙ୍ଗେ ଗର୍ଭସ୍ଥ ସନ୍ତାନ ସୁପୁତ୍ର ହୋଇ ପିତୃ ମାତୃ କୁଳକୁ ଉଦ୍ଧାର କରେ ।କୁଳ ଉଦ୍ଧାର ନିମିତ୍ତ ପିତୃଗଣଙ୍କ ଶ୍ରାଦ୍ଧ କାର୍ଯ୍ୟ ଖୁବ୍ ନିଷ୍ଠା ସହ କଲେ ସେମାନଙ୍କ ପ୍ରେତ ମୁକ୍ତି ହୁଏ । ଶ୍ରାଦ୍ଧ କାର୍ଯ୍ୟ ଉତ୍ତମ ବ୍ରାହ୍ମଣ ଦ୍ୱାରା କରି ଦାନ କରିବାକୁ ପରାମର୍ଶ ଦିଆଯାଇଛି । ଦାନ ଦ୍ୱାରା ପ୍ରେତର ପ୍ରେତତ୍ୱ ନଷ୍ଟ ହୁଏ । ପ୍ରେତ ମୋକ୍ଷ ହୁଏ । ବୈକୁଣ୍ଠ ପ୍ରାପ୍ତି ହୁଏ । ଏତଦ୍‌ବ୍ୟତୀତ ଯେଉଁ ସନ୍ତାନ ପ୍ରେତ ଶାନ୍ତି କରେ ସେ ମଧ୍ୟ ସକଳ ପାପରୁ ମୁକ୍ତି ହୁଏ ।

ଆହୁରି ମଧ୍ୟ ପରାମର୍ଶ ଦିଆଯାଇଛି, ମୁମୂର୍ଷୁ ଅବସ୍ଥାରେ ରୋଗୀକୁ ଗଙ୍ଗାଜଳ ପାନ କରିବାକୁ ଦେଲେ ତାର ସମସ୍ତ ପାପ ନଷ୍ଟ ହୋଇ ସେ ସ୍ୱର୍ଗବାସୀ

ହୁଏ । ସର୍ବୋପରି ଗରୁଡ଼ ଦର୍ଶନହିଁ ପାପ ମୁକ୍ତିର ଅନ୍ୟ ଏକ ପନ୍ଥା ବୋଲି ପରାମର୍ଶ ଦିଆଯାଇଛି । ଏହି ପରି ଭାବେ ସଂସାର ମୁକ୍ତି ପାଇଁ ଗୁରୁଡ଼ ବିଷ୍ଣୁଙ୍କୁ ଅନେକ ପ୍ରଶ୍ନ କରି ଯଥାଯଥ ଉତ୍ତର ଆଦାୟ କରିଛନ୍ତି । ତାଙ୍କ ପ୍ରଶ୍ନ ମଧ୍ୟରେ ସଂସାରରେ ଜୀବର ମରଣ ପରେ ସେ ପଞ୍ଚଭୂତରେ ମିଶିଯାଏ ଓ ପିଣ୍ଡ ଖାଲି ପଡିଥାଏ । ତାକୁ କିଏ ପୋଡ଼େ, କିଏ ପୋତେ ବା କିଏ ଫୋପାଡ଼ି ଦିଏ । କିନ୍ତୁ ଅଗ୍ନିରେ ଦାହ କଲେ କିଫଳ ମିଳେ, ପତି ଚିତା ନଲେ ପତ୍ନୀ କାହିଁକି ଝାସ ଦିଏ, ପ୍ରେତ କାର୍ଯ୍ୟ କିଏ କରିବା ଉଚିତ୍ ଓ କିଭଳି ଭାବେ ହେବା ଉଚିତ୍, ଏହି ଭଳି ଅନେକ ତାତ୍ତ୍ୱିକ ପ୍ରଶ୍ନ କରି ଗରୁଡ଼ ସଂସାର କଲ୍ୟାଣ ପାଇଁ ଚେଷ୍ଟା କରିଛନ୍ତି ।

## ଗରୁଡ଼ଙ୍କୁ ଶାସ୍ତ୍ରୀୟ ମାନ୍ୟତା

ବହୁ ଧାର୍ମିକ ପୁସ୍ତକ ବିଶେଷକରି ବେଦ, ଉପନିଷଦ, ରାମାୟଣ, ମହାଭାରତ, ଭାଗବତ ସମେତ ମତ୍ସ୍ୟ, ବିଷ୍ଣୁ, ବ୍ରହ୍ମାଣ୍ଡ, ଅଗ୍ନିପୁରାଣ, ପ୍ରଭୃତିରେ ଗରୁଡ଼ଙ୍କୁ ଶାସ୍ତ୍ରୀୟ ମାନ୍ୟତା ଦିଆଯାଇଛି । ପଦ୍ମ ପୁରାଣ ଅନୁସାରେ ଗରୁଡ଼ ସମସ୍ତ ବିଶ୍ୱକୁ ନିଷାଦଭାବି ଗିଳି ଦେଇଥିଲେ । ବିଷ୍ଣୁପୁରାଣ ଅନୁସାରେ ଲୋକ ପିତାମହ ପୃଥୁଙ୍କ ଅଭିଷେକ ବେଳେ ସମସ୍ତଙ୍କୁ ଅଧିକାରମାନ ପ୍ରଦାନ ବେଳେ ''ପତତ୍ତ୍ରିଣାଂତୁ ଗରୁଡ଼ମ'' କହି ଗରୁଡ଼ଙ୍କୁ ପକ୍ଷୀମାନଙ୍କ ମଧ୍ୟରେ ଶ୍ରେଷ୍ଠ ପଦବୀ ପ୍ରଦାନ କରିଥିଲେ । ଅଗ୍ନିପୁରାଣ ବର୍ଣ୍ଣିତ ଅଛିଯେ ବିଷ୍ଣୁ ପରିବାରରେ ଥିବା ବିଭିନ୍ନ ଦେବାଦେବୀଙ୍କ ପୂଜା ମଧ୍ୟରେ ଗରୁଡ଼ଙ୍କ ପୂଜା କରଣୀୟ । ବିଷ୍ଣୁଙ୍କୁ ପୂଜା କଲାବେଳେ ପୂର୍ବ ଦ୍ୱାରରେ ଗରୁଡ଼, ଦକ୍ଷିଣ ଦ୍ୱାରାରେ ଚକ୍ର, ଉତ୍ତରେ ଦିଗରେ ଗଦା ଓ ଅଗ୍ନି କୋଣରେ ଶଙ୍ଖ ଓ ଧନୁ ସ୍ଥାପନ କରାଯାଇ ପୂଜା କରାଯାଏ । ପୁଣି କୁହାଯାଇଛିକି ଗରୁଡ଼ ଶ୍ରୀକୃଷ୍ଣଙ୍କ ସହ ଯୁଦ୍ଧରେ ସହଯୋଗ କରିଥିଲେ । ପାରିଜାତ ଆଣିଲାବେଳେ ଆକ୍ରମଣ ହେବାରୁ ସେ ଐରାବତ ହାତୀକୁ ପରାସ୍ତ କରି ଶ୍ରୀକୃଷ୍ଣ ଓ ସତ୍ୟଭାମାଙ୍କୁ ଦ୍ୱାରକାକୁ ନେଇ ଆସିଥିଲେ । ତାରକାମୟ ତଥା କାଳନେମି ଯୁଦ୍ଧରେ ଗରୁଡ଼ ଶତ୍ରୁପକ୍ଷ ସହ ପ୍ରବଳ ଯୁଦ୍ଧ କରିଥିଲେ । କନଖାଲରେ ସେ ସର୍ବଦା ଜପରତ ରହୁଥିଲେ । ଭୀମଦ୍ୱାଦଶୀ (ଗରୁଡ଼ ଦ୍ୱାଦଶୀ) ରେ ଲକ୍ଷ ହୋମରେ ଗରୁଡ଼ଙ୍କ ପୂଜାର ଚଳଣି ଅଛି । କାର୍ତ୍ତିକ ମାସ ଭୀମ ଦ୍ୱାଦଶୀ ତିଥିରେ ଗରୁଡ଼ଙ୍କ ଜନ୍ମ ହୋଇଥିବାରୁ ଏହି ଦିବସଟିକୁ ଗରୁଡ଼ ଦ୍ୱାଦଶୀ ରୂପେ ପାଳନ କରାଯାଏ ।

# ଓଡ଼ାସିଂହର ନାମକରଣ

ଓଡ଼ିଶୁ ଶବ୍ଦର ଅର୍ଥ ଚଷା । ଏ ଅଞ୍ଚଳ କୃଷି ପ୍ରଧାନ ଅଞ୍ଚଳ ରୂପେ ଶହ ଶହ ବର୍ଷଧରି ପ୍ରସିଦ୍ଧି ଅର୍ଜନ କରି ଆସିଛି । ଚଷାମାନେ ମୁଖ୍ୟତଃ କୃଷି ଉପରେ ନିର୍ଭର କରୁଥିବା ବେଳେ ଯୁଦ୍ଧ ସମୟରେ ରାଜାମାନଙ୍କ ଯୋଦ୍ଧା ସାଜି ରଣ କ୍ଷେତ୍ରରେ ଅବର୍ତ୍ତୀର୍ଣ୍ଣ ହୋଇଥାନ୍ତି । ସେଥିପାଇଁ ସେମାନଙ୍କୁ କ୍ଷତ୍ରୀୟ କୁହାଯାଏ । ଓଡ଼ାସିଂହର ବିଶେଷତ୍ୱ ସଂପର୍କରେ ଏହା ପୂର୍ବରୁ ସୂଚନା ଦିଆଯାଇଛି । ପ୍ରକୃତ କ୍ଷତ୍ରୀୟ ଭାରତ ଭୂଇଁରେ ନାହାନ୍ତି ବୋଲି କହିଲେ ଅତ୍ୟୁକ୍ତି ହେବନାହିଁ । ବୀର ପର୍ଶୁରାମ ଏକୋଇଶବାର ଭାରତକୁ ନିକ୍ଷତ୍ରୀୟ କରିଥିଲେ । ବହୁ କ୍ଷତ୍ରୀୟ ଯୋଦ୍ଧା ପ୍ରାଣତ୍ୟାଗ କଲେ । କୁହାଯାଏ ଯେ ଭଗବାନ ସୃଷ୍ଟି ସର୍ଜନା କଲାପରେ ମାନବ ଜାତିକୁ ଚାରିଭାଗରେ ବିଭକ୍ତ କରିଥିଲେ । ଭଗବାନଙ୍କ ମୁଖରୁ ବ୍ରାହ୍ମଣ, ବାହୁରୁ କ୍ଷତ୍ରୀୟ, ଉରରୁ ବୈଷ୍ୟ ଓ ପାଦରୁ ଶୁଦ୍ର ସମ୍ଭୁତ । ଶ୍ରୀମଦ୍ ଭଗବଦ୍ ଗୀତାରେ ଭଗବାନ ଶ୍ରୀକୃଷ୍ଣ ଅର୍ଜୁନଙ୍କୁ ଏହି ଚାରିଜାତିର ଅଭେଦ ସଂପର୍କ ଓ ଗୁଣକର୍ମ ସମ୍ବନ୍ଧରେ କହିଛନ୍ତି ।

''ଚାତୁ ର୍ବର୍ଣ୍ୟଂ ମୟା ସୃଷ୍ଟଂ ଗୁଣକର୍ମ ବିଭାଗଶଃ''

ଏହି ଚାରିଜାତିର ଉତ୍ପତ୍ତି, ଗୁଣ ଓ କର୍ମର ବିଷଦ୍ ଅବଲୋକନରୁ ଜଣାଯାଏ ଏକ ପରିପୂର୍ଣ୍ଣ ବିକାଶଶୀଳ ମାନବ ସଭ୍ୟତା ପାଇଁ ଏହି ଚାରିଜାତିର ଆତ୍ମିକ ମିଳନ ରହିଆସିଅଛି । ମହାଭାରତରେ ବର୍ଣ୍ଣିତ ଅଛି ଯେ, ଆଚାର ବ୍ୟବହାରକୁ ଭିତ୍ତିକରି ସମଗ୍ର ମାନବ ଜାତିକୁ ଚାରିଶ୍ରେଣୀରେ ବିଭକ୍ତ କରାଯାଇଛି । ସେଗୁଡ଼ିକ ହେଲା ବ୍ରାହ୍ମଣ, କ୍ଷତ୍ରୀୟ, ବୈଷ୍ୟ ଓ ଶୁଦ୍ର । ଓଡ଼ାସିଂହରେ ଯେଉଁ କ୍ଷତ୍ରୀୟ ପରିବାର ଅଛନ୍ତି, ସେମାନଙ୍କ ମଧ୍ୟରେ 'ପ୍ରଧାନ' ସମ୍ପ୍ରଦାୟ ଆଗୁଆ । ସେମାନଙ୍କୁ ଗ୍ରାମ ପ୍ରଧାନ ବା ଗ୍ରାମ ମୁଖିଆ କହନ୍ତି । କେହି କେହି କହନ୍ତି ''ଉଦ୍ରସିଂହ'' ନାମକ ଜଣେ ରାଜା ଏ ଅଞ୍ଚଳରେ ରାଜତ୍ୱ କରୁଥିଲେ ଓ ତାଙ୍କ ନାମାନୁସାରେ ଓଡ଼ାସିଂହର ନାମକରଣ ହୋଇଛି । କିନ୍ତୁ ଏହା ବିଭ୍ରାନ୍ତକ ବୋଲି ମନେହୁଏ । ଓଡ଼ାସିଂହ ତେର ମୌଜା ବୋଲି ଯାହା କୁହାଯାଏ ସେହି ମୌଜା ମଧ୍ୟରେ ତିଳିଦା, କଟେରପା, ଜାଗୁଳାଇ ପଡ଼ା, ଧନୁପଡ଼ା, ଭୀମଦାସ ପୁର, କାଳୀଦହି, କଙ୍କରାଇଲୋ, କେରେଙ୍ଗା, ଭୋରା, କୁଶୁପୁରୁ, ଖଇରା ପ୍ରଭୃତି ଅନ୍ତର୍ଗତ ।

ପୁରୁଷୋତ୍ତମ ଦେବଙ୍କ ପୁତ୍ରମାନଙ୍କ ମଧ୍ୟରୁ ଗୋପୀନାଥ ଦେବ ଏଠାକାର ଶେଷ ରାଜା । ପୁରୁଷୋତ୍ତମ ଦେବଙ୍କ ଆଜ୍ଞାରେ ପୁରୁଷୋତ୍ତମ ପୁର, ସିଙ୍ଘପୁର, ପଦ୍ମ ପୁର, ଗଙ୍ଗା ପୁର, ରୁଦ୍ର ପୁର, ମୋହନା ପୁର, ଏଲମା ପୁର, ସତ୍ୟଭାମା ପୁର, କୃଷ୍ଣ ପୁର, ବିଶ୍ୱନାଥ ପୁର, ମାର୍କଣ୍ଡ ପୁର, ହୀରା ପୁର, ଲକ୍ଷ୍ମୀନାରାୟଣ ପୁର ଓ ପାଟ ପୁର ପ୍ରଭୃତି ୧୬ଟି ବ୍ରାହ୍ମଣ ଶାଶନ ବସାଯାଇ ସେମାନଙ୍କୁ ଜମି ଖଞ୍ଜିଦିଆଯାଇଥିଲା ବୋଲି ପୁରୁଷୋତ୍ତମ ଦେବଙ୍କ କାଞ୍ଚିକାବେରୀ ଉପାଖ୍ୟାନରେ ବର୍ଣ୍ଣିତ ହୋଇଛି । ପୁରୁଷୋତ୍ତମ ଦେବଙ୍କ ବିଭିନ୍ନ ରାଣୀଙ୍କ ନାମାନୁସାରେ ଏହି ଗ୍ରାମ ଗୁଡ଼ିକର ନାମ କରଣ ହୋଇଥିବାର ମଧ୍ୟ କୁହାଯାଏ ।

ଓଡ଼ାସିଂହ ସମେତ ତେରଟି ମୌଜା କୃଷି ବହୁଳ ଅଞ୍ଚଳର ବ୍ରାହ୍ମଣ ମାନଙ୍କୁ ଖାଦ୍ୟ ଯୋଗାଇ ଦିଆଯାଉଥିଲା । ଓଡ଼ିଶାରେ ଆର୍ଯ୍ୟ ସଭ୍ୟତା, ଦ୍ରାବିଡ଼ ସଭ୍ୟତା ଉପରେ ଯେତେବେଳେ ପ୍ରଭାବ ବିସ୍ତାର କଲା, ପୁରୁଷୋତ୍ତମ ସେତେବେଳେ ବହୁ ବ୍ରାହ୍ମଣ ବସତି ସ୍ଥାପନ କରିଥିଲେ । ଗଙ୍ଗ ବଂଶର ରାଜା ପୁରୁଷୋତ୍ତମ ଦେବ ୧୪୭୦ ଖ୍ରୀ:ଅ:ରେ ସମଗ୍ର ଓଡ଼ିଶାର ଶାସନ ଭାର ନେଲେ । ରାଜଧାନୀ କଟକରେ ଥିଲା । ସେହି ସମୟରେ ପଞ୍ଚସଖା ନାମରେ ଅଭିହିତ ଅଚ୍ୟୁତାନନ୍ଦ, ଶିଶୁ ଅନନ୍ତ, ଜଗନ୍ନାଥ ଦାସ, ଯଶୋବନ୍ତ ଓ ବଳରାମ ଦାସ ପ୍ରଭୃତି କବିମାନେ ଜନ୍ମ ଗ୍ରହଣ କରିଥିଲେ । ପୁରୁଷୋତ୍ତମ ଦେବ ନିୟମିତ ଅଚ୍ୟୁତାନନ୍ଦଙ୍କ ସାଧନା କ୍ଷେତ୍ର ନେମାଳକୁ ଯା-ଆସ କରୁଥିଲେ । "ଭକ୍ତିଭାଗବତ" ମହାକାବ୍ୟରୁ ଜଣାପଡ଼େ- ପୁରୁଷୋତ୍ତମ ଦେବ ତିରିଶି ବର୍ଷ ଶାସନ କରିଥିଲେ ଓ ଚିତ୍ରୋତ୍ପଳା ନଦୀ କୂଳରେ ପ୍ରାଣ ତ୍ୟାଗ କରିଥିଲେ । ସମ୍ଭବତଃ ସେ ନେମାଳରେ ପ୍ରାଣତ୍ୟାଗ କରିଥିବାର ଅନୁମାନ କରାଯାଏ ।

## ଓଡ଼ାସିଂହରେ ଗରୁଡ଼

କଟକ ଜିଲ୍ଲା ସାଲେପୁର ଥାନା ଅନ୍ତର୍ଗତ ଓଡ଼ାସିଂହ ଗ୍ରାମ ମହାନଦୀ ଓ ବ୍ରାହ୍ମଣୀ ନଦୀର ମଧ୍ୟବର୍ତ୍ତୀ ଅଞ୍ଚଳ, ସେଠାରେ ବିଶ୍ୱ ପ୍ରସିଦ୍ଧ ଗରୁଡ଼ ଠାକୁର ଶୋଭା ପାଉଛନ୍ତି । ସ୍ୱୟଂ ମହାପ୍ରଭୁ ପାତାଳରୁ ପ୍ରସ୍ତର ମୂର୍ତ୍ତୀ ରୂପେ ଆବିର୍ଭୂତ । ଏଠାରେ କହିବା ବାହୁଲ୍ୟ ଯେ ପୁରୀଠାରେ ଯେଉଁ ଗରୁଡ଼ ଅଛନ୍ତି ତାହାଂ ସ୍ଥାପିତ ଓ ଓଡ଼ାସିଂହଠାରେ ଥିବା ଗରୁଡ଼ ସ୍ୱୟଂ ସମ୍ଭୂତ ।

ଓଡ଼ାସିଂହରେ ଯେଉଁ ଗରୁଡ଼ ସେ ବହୁ ପ୍ରାଚୀନ । ମହାଭାରତରେ ଦ୍ରୋଣ ଦୈନିକ ଗରୁଡ଼ ଦର୍ଶନ କରି ଗରୁଡ଼ ବ୍ୟୁହ ଦ୍ୱାରା ସମରାଭ୍ୟାସ କରୁଥିଲେ । ଅବହେଳିତ ଗରୁଡ଼ଙ୍କ ପାଇଁ ଚୋଡ଼ ଗଙ୍ଗଦେବ ମନ୍ଦିର ନିର୍ମାଣ କରିଥିଲେ ବୋଲି କୁହାଯାଏ । ଓଡ଼ାସିଂହ ଅଞ୍ଚଳର ଜଣେ ଚମାର ପିଲାଠାରୁ ସମସ୍ତ ଖବର ବୁଝି ଗରୁଡ଼ଙ୍କୁ ଠାବ କରି ମନ୍ଦିର ନିର୍ମାଣ ଓ ଉପଯୁକ୍ତ ସେବାର୍ ବ୍ୟବସ୍ଥା କରିଥିଲେ ।

୧୧୩୫ ଖ୍ରୀ:ଅ: ଚୋଡ଼ଗଙ୍ଗଦେବଙ୍କ ରାଜଧାନୀ ଥାଏ କଳିଙ୍ଗ ନଗର । ସେହି ବର୍ଷ ତାଙ୍କ ରାଜଧାନୀ କଟକକୁ ଉଠାଇ ଆଣିଥିଲେ । ଚୋଡ଼ଗଙ୍ଗ ଦେବଙ୍କ ଚନ୍ଦ୍ରଲେଖା ନାମ୍ନୀ ଏକ ରାଣୀ ଥିଲେ । ସେ ଅତ୍ୟନ୍ତ ଗରୁଡ଼ ଭକ୍ତ । ସେ କଶ୍ୟପ ମହିର୍ଷିଙ୍କ ପତ୍ନୀ ଅଦିତିଙ୍କ ତୁଲ୍ୟା । କେନ୍ଦୁଲି ତାମ୍ର ଶାସନ ଅନୁସାରେ

"ତସ୍ୟ ଶ୍ରୀ ଚୋଡ଼ଗଙ୍ଗ କ୍ଷିତି ବଳୟପତେ
ବଂଶ ସନ୍ତାନ ବଲ୍ଲୀ
କନ୍ଦଶ୍ରୀ ଚନ୍ଦ୍ରଲେଖା ସ୍ଫୁଟ କରିରିତ
ପ୍ରେୟସୀ କଶ୍ୟପସ୍ୟ
ତସ୍ୟାମୁଦ୍ଧାମଧାମ କ୍ଷୟିତ ଦିନମଣି
ଜଜ୍ଞବାନ୍ ରାଜରାଜଃ"

ଅନ୍ୟ ପକ୍ଷରେ କଶ୍ୟପ ମୁନିଙ୍କ ପୁତ୍ର ଭଗବାନ୍ ଗରୁଡ଼ । ଏଣୁ ଚନ୍ଦ୍ରଲେଖା ଗରୁଡ଼ଙ୍କୁ ଅତ୍ୟନ୍ତ ଭକ୍ତି କରୁଥିଲେ । ଓଡ଼ାସିଂହରେ ଗରୁଡ଼ ଦୈନିକ ବିଷ୍ଣୁଙ୍କୁ ଦର୍ଶନ କରିବା ପାଇଁ, ସେ ଜଗନ୍ନାଥ, ବଳଭଦ୍ର ଓ ସୁଭଦ୍ରାଙ୍କ ମୂର୍ତ୍ତି ସ୍ଥାପନ କରିଥିଲେ । ପୁରୀ ଜଗନ୍ନାଥ ମନ୍ଦିର ମେଘନାଦ ପାଚେରୀ ସଦୃଶ ଏଠା ଗରୁଡ଼ ଓ ବିଷ୍ଣୁ ମନ୍ଦିରର ପାଚେରୀ ନିର୍ମାଣ କରିଥିଲେ । ପୁରୀଠାରେ ଜଗନ୍ନାଥ ବେଢ଼ା ଢ଼ାଞ୍ଚାରେ ସେ ଏଠାରେ ବେଢ଼ା ନିର୍ମାଣ କରିଥିଲେ । ଗଙ୍ଗବଂଶର ପ୍ରତିନିଧି ରାଜାମାନେ ଯେତେବେଳେ ଶାସନ କରୁଥିଲେ, ସେତେବେଳେ ସେମାନେ ରହୁଥିଲେ କଟରପାରେ ଓ ପାଟରାଣୀ ରହୁଥିଲେ ଓଡ଼ାସିଂହରେ । ଗରୁଡ଼ ମଠକୁ ମଧ ରାଣୀହଂସପୁର କୁହାଯାଏ । ଓଡ଼ାସିଂହର ଗରୁଡ଼ ମଂଧ କଟରପା ଅଧୀନରେ । ଦେଶର ବିଭିନ୍ନ ପ୍ରାନ୍ତରୁ ଯେଉଁ

ଯାତ୍ରୀମାନେ ଆସନ୍ତି ସେମାନେ ପାତାଳୀ ଗରୁଡ଼ ଦର୍ଶନ କରିବାକୁ ଓଡ଼ାସିଂହ ଆସନ୍ତି । ପାତାଳୀଗରୁଡ଼ ଦର୍ଶନ ହିଁ ଅତ୍ୟନ୍ତ ମହତ୍ତ୍ୱପୂର୍ଣ୍ଣ ବୋଲି କୁହାଯାଏ । ପାଞ୍ଚକୋଷ ବ୍ୟାପୀ ଗରୁଡ଼ଙ୍କ ଚର୍ତୁପାର୍ଶ୍ୱରେ ଯମଦଣ୍ଡ ଲାଗେନାହିଁ । ପାତାଳୀ ଗରୁଡ଼ର ବିଶେଷତ୍ୱ ଏହିଯେ ଏହି ମୂର୍ତ୍ତିଟି କ୍ରମଶଃ ବଢ଼ିବାରେ ଲାଗିଛି ।

ଚୋଡ଼ଗଙ୍ଗଙ୍କ ସମୟରେ କଟରପା ବଳଦେବ ଜୀଉ ମଠ ନିର୍ମାଣ ହୋଇଥିଲା ବୋଲି କୁହାଯାଏ । ଏହା ପୁରୀ ଜଗନ୍ନାଥ ମନ୍ଦିରର ସମସାମୟୀକ ବୋଲି କେତେକ ଐତିହାସିକ ମତ ଦିଅନ୍ତି । ଚୋଡ଼ଗଙ୍ଗଦେବଙ୍କ ରାଜତ୍ୱ କାଳରେ ବହୁ ବିଶିଷ୍ଟ ଘଟଣା ମାନଙ୍କର ଆଭାସ ମିଳେ । ସେ ବହୁ ବିଷ୍ଣୁ ମନ୍ଦିର ଓ ଶିବ ମନ୍ଦିର ଓଡ଼ିଶାର ବିଭିନ୍ନ ସ୍ଥାନରେ ପ୍ରତିଷ୍ଠା କରିଥିଲେ । ପୁଷ୍କରିଣୀ, ତଡ଼ାଗ ପ୍ରଭୃତି ଖନନ କରିଥିବାର ପ୍ରମାଣ ମିଳେ । ରାଇସୁଙ୍ଗୁଡ଼ାଠାରେ ଗଙ୍ଗେଶ୍ୱର ମନ୍ଦିର ଗଙ୍ଗ ବଂଶର ଅନ୍ୟଏକ କୀର୍ତ୍ତି । କଟରପା ବଳଦେବଜୀଉମନ୍ଦିର ତଥା ଓଡ଼ାସିଂହ ଗରୁଡ଼ ମନ୍ଦିରର ପ୍ରଶାସନ ଦାୟିତ୍ୱରେ ଥିବା ପୁରୁଷୋତ୍ତମ ଦେବଙ୍କ ଦ୍ୱିତୀୟ ପୁତ୍ର ଏବଂ ପ୍ରତାପରୁଦ୍ରଦେବଙ୍କ ସାନଭାଇ ଗୋପୀନାଥ ଦେବ ଏଠା ଗଙ୍ଗ ବଂଶର ଶେଷ ରାଜା । ଖ୍ରୀ:ଅ: ୧୪୯୭ରୁ ୧୫୩୫ ପର୍ଯ୍ୟନ୍ତ ପ୍ରତାପରୁଦ୍ରଦେବ ଓଡ଼ିଶାର ଶାସକ ଥିଲେ । ସେହିସମୟରେ ଚାଲୁକ୍ୟ ବଂଶର ମୁକୁନ୍ଦ ଦେବ କଟକର ଶାସନ ଭାରରେ ନିଯୁକ୍ତ ଥାନ୍ତି । ପ୍ରତାପରୁଦ୍ରଦେବଙ୍କ ମୃତ୍ୟୁ ପରେ ସେ ସମଗ୍ର ଓଡ଼ିଶାର ଶାସନ ଭାର ଖ୍ରୀ:ଅ:୧୫୫୯ରେ ଗ୍ରହଣ କଲେ । ଗଙ୍ଗ ବଂଶର ମଉଡ଼ମଣି ପ୍ରତାପରୁଦ୍ରଙ୍କ ଅନ୍ତେ ଶାସନ ଦାଇତ୍ୱ ଚାଲିଯାଏ ଚାଲୁକ୍ୟ ବଂଶର ମୁକୁନ୍ଦ ଦେବଙ୍କ ହସ୍ତକୁ । ଏଣୁ ଗଙ୍ଗ ବଂଶର ଛୋଟ ଛୋଟ ରାଜା ଭୟରେ ଶାସନ ଦାଇତ୍ୱ ହସ୍ତାନ୍ତର କରିଦିଅନ୍ତି । ଏହିଭଳି ଏକ ସମୟରେ ଗୋପୀନାଥ ଦେବ କଟରପା ସିଂହାସନ ଛାଡ଼ି ପଳାଇଯାଆନ୍ତି ବାନପ୍ରସ୍ଥ କରିବାକୁ । ସେ ଅପୁତ୍ରିକ ଥିବାରୁ ବାନପ୍ରସ୍ଥ ଶ୍ରେୟସ୍କର ବୋଲି ଭାବିଥିଲେ । ସେତେବେଳକୁ ରାଣୀଙ୍କର ଇହଲୀଳା ହୋଇଯାଇଥାଏ । ସେ ଏକ ଚମାର ପରିବାର ଉପରେ ଠାକୁରଙ୍କ ଦାଇତ୍ୱ ଅର୍ପଣ କରିଗଲେ । ଏହିପରି ଏକ ଶୂନ୍ୟତା ଭିତରେ ମୋଗଲ ଶାସନ ପ୍ରବେଶ କରେ ।

୧୫୯୨ରୁ ୧୭୫୧ ପର୍ଯ୍ୟନ୍ତ ମୋଗଲ ଶାସନ କାଳରେ ମଠ ମନ୍ଦିରର ପ୍ରଶାସନ ଚରମ ବିଶୃଙ୍ଖଳାରେ ରହିଲା । ୧୭୫୧ ଖ୍ରୀଷ୍ଟାବ୍ଦରେ ପ୍ରତାପରୁଦ୍ର ବଂଶଜ ରାମଚନ୍ଦ୍ର ଦେବଙ୍କୁ ମୋଗଲମାନେ ପୁରୀର ଗଜପତି ରାଜା ଭାବେ ଅଭିଷିକ୍ତ କରାଇଥିଲେ । ସେ ମୁସଲମାନ ଧର୍ମ ଗ୍ରହଣ କରିଥିଲେ ବୋଲି କୁହାଯାଏ ।

୧୭୫୧ରେ ମରହଟ୍ଟା ମାନଙ୍କ ପ୍ରବେଶ ପରଠାରୁ ମଠମନ୍ଦିରର ଅବସ୍ଥା କ୍ରମଶଃ ସୁଧୁରିବାକୁ ଲାଗିଲା ।

ମରହଟ୍ଟାମାନେ ଓଡ଼ିଶା ଦଖଲ ସମୟରେ ବହୁବାର ମୋଗଲ ମାନଙ୍କ ସହ ଯୁଦ୍ଧ ହୋଇଛି । ଅନେକ ବାର ମରହଟ୍ଟାମାନେ ପରାଜୟ ସ୍ୱୀକାର କରି ମଧ ଜିଦ୍‌ରେ ଅଟଳ ଥାଡି ଓଡ଼ିଶାକୁ ଦଖଲ କରିବା ପାଇଁ । ୧୭୪୦ ଖ୍ରୀ:ଅ:ରେ ମରହଟ୍ଟାର ନେତୃତ୍ୱ ନେଇ ରଘୁଜୀ ଭୋଁସ୍‌ଲେ ଓଡ଼ିଶା ଆକ୍ରମଣ କଲେ । କଟକ ଥାଏ ରାଜଧାନୀ । ୧୭୪୫ ଖ୍ରୀ:ଅ: ସୁଦ୍ଧା ତିନିଥର କଟକ ଆକ୍ରମଣ କରି ଶେଷରେ ଜୟବାନା ଉଡ଼ାଇଲେ । ରଘୁଜୀଙ୍କ ପରେ ତାଙ୍କ ପୁଅ ଜାନୁଜୀ ଭୋଁସ୍‌ଲେ ଓଡ଼ିଶାର ସର୍ବମୟ କର୍ତ୍ତା । ସେ ରହୁଥିଲେ କଟକ ବାରବାଟି ଦୁର୍ଗରେ । ଆଫ୍‌ଗାନୀ, ମୋଗଲ୍‌, ମରହଟ୍ଟା ମାନଙ୍କ ମଧରେ ସଂଘର୍ଷ ଜନିତ ଘଟଣା ପ୍ରବାହରେ ରାଜ୍ୟର ଅନେକ କଳା, ସ୍ଥାପତ୍ୟ, ମଠ, ମନ୍ଦିର ପ୍ରଶାସନ ସବୁକିଛି ଓଲଟ ପାଲଟ ହୋଇଥିଲା । ୩୦ ବର୍ଷ ସଂଘର୍ଷପରେ ମୋଗଲ ମରହଟ୍ଟା ମଧରେ ଏକପ୍ରକାର ବୁଝାମଣା ହେଲା । ମଠ-ମନ୍ଦିର ପ୍ରଭୃତି ରହିଲା ମରହଟ୍ଟାଙ୍କ ହସ୍ତରେ । କାରଣ ସେମାନେ ଥିଲେ ନୈଷ୍ଠିକ ହିନ୍ଦୁ । କିନ୍ତୁ ରାଜ୍ୟ ଶାସନ ଭାର ରହିଲା ମୋଗଲଙ୍କ ହସ୍ତରେ ।

ମୋଗଲ - ମରହଟ୍ଟା ମଧରେ ଦୀର୍ଘ ୩୦ ବର୍ଷ ଯୁଦ୍ଧ ସମୟରେ ନାଗାମାନେ ମରହଟ୍ଟାମାନଙ୍କୁ ସାହାଯ୍ୟ କରୁଥିଲେ । ଏପରିକି ସେମାନେ ଜୀବନ ଉତ୍ସର୍ଗ କରିବାକୁ ପଛାଉନଥିଲେ । ସନ୍ତ୍ରାସବାଦୀ ଭୂମୀକାରେ ସାଧୁ ଭେଷରେ ସେମାନେ ଅଗ୍ରଗନ୍ୟ ଥିଲେ । ସେଥିପାଇଁ ସେମାନଙ୍କୁ ସନ୍ତୁଷ୍ଟ କରିବା ପାଇଁ ଜାନୁଜୀ ଭୋସଲାଙ୍କ ଦଖଲରେ ଥିବା ଅନେକ ମଠ - ମନ୍ଦିରକୁ ନାଗା ମାନଙ୍କ ହସ୍ତରେ ଅର୍ପଣ କରିଥିଲେ ପ୍ରାୟ ଅଷ୍ଟାଦଶ ଶତାବ୍ଦୀର ମଧ ଭାଗରେ ।

ପୁରୀର ଖାକି ମଠ ଓ କଟରପାର ବଳଦେବ ଜୀଉ ମଠଟି ପଡ଼ିଥିଲା ନାଗା ସାଧୁ ଲାଲୁ ଦାସଙ୍କ ହସ୍ତରେ ପ୍ରାୟ ୧୭୫୧ ମସିହାରେ । ସେହି ସମୟରେ କଟରପା ମଠର ଅଚଳାଚଳ ସମ୍ପତ୍ତି ଥିଲା । ନ ଅଙ୍କ ଦୁର୍ଭିକ୍ଷ ବେଳେ କଟରପାରୁ ବହୁ ଖାଦ୍ୟ ଶସ୍ୟ ଚାନ୍ଦବାଲି ପର୍ଯ୍ୟନ୍ତ ବଣ୍ଟା ହୋଇଥିଲା ବୋଲି କୁହାଯାଏ । କଟରପା ମଠର ସହିତ ଓତଃପ୍ରୋତ ଭାବେ ଜଡ଼ିତ ଅନେକ ପରିବାର ବହୁ ବିତ୍ତଶାଳୀ ହୋଇପାରିଥିଲେ । ସେହି ମଧରୁ ଯେଠୀ ପରିବାର ଅନ୍ୟତମ ।

ଲାଲୁଦାସଙ୍କ କଟରପା ମଠ ଦଖଲ ପରେ ସେ ଦେଖିଲେ ଓଡ଼ାସିଂହର ଗରୁଡ଼ ମଠ ଶ୍ରୀହୀନ ହୋଇପଡ଼ିଛି । ତତ୍‌କାଳୀନ ଚମାର (ଗରୁଡ଼ ଦାଇଦ୍ୱରେ ଥିବା ଚମାର) ଠାରୁ ମଠ ପରିଚାଳନା ନିଜ ହାତକୁ ନେଇ ତାର ଶ୍ରୀବୃଦ୍ଧି କରିବାରେ ଲାଗିଲେ ।

ପୁରୀ ଜଗନ୍ନାଥ ଦର୍ଶନ କରିବା ପାଇଁ ନାଗାମାନେ ହାତୀ, ଛତି ନେଇ ପୁରୀ ଆସିଥାନ୍ତି । ସେତେବେଳେ ଗମନା ଗମନର ସୁବିଧା ନଥାଏ । ବସ୍, କିମ୍ବା ରେଳ ଗାଡ଼ିର ପ୍ରଚଳନ ନଥିବାରୁ ରାସ୍ତାଘାଟ ନଥାଏ । କେବଳ ଜଳପଥରେ ବଡ଼ ବଡ଼ ଡ଼ଙ୍ଗାରେ ହାତୀମାନେ ପାର୍ ହୋଇ ଓଡ଼ିଶାକୁ ଆସିଥାନ୍ତି । ପଶ୍ଚିମ ବଙ୍ଗରୁ ଚାନ୍ଦବାଲି ଓ ଚାନ୍ଦବାଲିରୁ ବରମବର୍ଦ୍ଧା ବାଟେ ଓଡ଼ାସିଂହ କଟରପା ଦେଇ କଟକ ଓ ପୁରୀ ଆସିଥାନ୍ତି । ଅନ୍ୟଏକ ବାଟ ଚାନ୍ଦବାଲିରୁ କେନ୍ଦ୍ରାପଡ଼ା ବାଟେ କଟକ ପୁରୀ ଯାଇଥାଏ । ନାଗା ଓ ଅନ୍ୟାନ୍ୟ ଯାତ୍ରୀ ବେଳେ ବେଳେ ଓଡ଼ାସିଂହ ଓ କଟରପା ଠାରେ ରାତ୍ରୀ ଯାପନ କରନ୍ତି । ସେତେବେଳେ ଓଡ଼ାସିଂହ ଦ୍ୱିତୀୟ ଶ୍ରୀକ୍ଷେତ୍ର ବୋଲି ପରିଚିତ ଥିଲା । ଏବେ ସୁଦ୍ଧା ଓଡ଼ାସିଂହର ମାଟିତଳୁ ମିଳୁଥିବା ବହୁ ପ୍ରାଚୀନ ଦୁର୍ଗର ଭଗ୍ନାଂଶ ଦର୍ଶକଙ୍କୁ ସ୍ତମ୍ଭୀଭୂତ କରୁଛି । ଲାଲୁଦାସଙ୍କ ଅନ୍ତେ କଟରପା ମଠର ପରିଚାଳନା ବଂଶାନୁକ୍ରମେ ଲାଗିରହିଛି । ଲାଲୁଦାସଙ୍କ ପରେ ଚୈତନ୍ୟ, ରଘୁନାଥ, ବଳରାମ, ଶ୍ରୀରାମ, ରାମନାରାୟଣ, ତୁଳସୀରାମ୍ ଓ ବର୍ତ୍ତମାନ୍ ରାମକୃଷ୍ଣଙ୍କ ହାତରେ ପରିଚାଳନା ଅଛି ।

ଲାଲୁଦାସଙ୍କ ଅନ୍ୟତମ ନାତି ରାଜାରାମ ଗରୁଡ଼ ମଠରେ ରହୁଥିଲେ । କାଳକ୍ରମେ ପାରିବାରିକ ଅଶାନ୍ତି, ମାଲିମକଦ୍ଦମା ଯୋଗୁଁ କଟରପା ମଠ ଓ ଗରୁଡ଼ ମଠ ଅବସ୍ଥାର ଅବନତି ଘଟିଲା ।

ପୁରୁଷୋତ୍ତମ ଦେବଙ୍କ ମୋହନା ନାମ୍ନୀ ଜଣେ ରାଣୀଙ୍କ ନାମାନୁସାରେ ଏଠା ମହନାପୁର ଗ୍ରାମ ପ୍ରତିଷ୍ଠା ହୋଇଥିଲା । ରାଣୀ ରହୁଥିଲେ ମହନାପୁରରେ । ସେ ଜଗନ୍ନାଥ ବଳଭଦ୍ର ଓ ସୁଭଦ୍ରା ମୂର୍ତ୍ତି ପ୍ରତିଷ୍ଠା କରି ବିରାଟ ମନ୍ଦିର ନିର୍ମାଣ କରିଥିବାର କୁହାଯାଉଛି । ଏବେ ମନ୍ଦିର ଧ୍ୱଂସ ପାଇଥିଲେ ମଧ୍ୟ ଭଗ୍ନାବଶେଷରୁ ଏହାର ପ୍ରମାଣ ମିଳେ । ଆହୁରି ମଧ୍ୟ କୁହାଯାଇଛି ଗଙ୍ଗ ବଂଶର ଶାସନବିପର୍ଯ୍ୟସ୍ତ ଅବସ୍ଥାରେ ଗଡ଼ମଧୁପୁରର ରାଜା ଏଠା ତ୍ରିମୂର୍ତ୍ତିଙ୍କୁ ଚୋରାଇ ନେଇଥିଲେ । ସେହି ସମୟରେ ଦର୍ପଣୀ ଗଡ଼ରାଜା ଓଡ଼ାସିଂହଠାରେ ଥିବା ଜଗନ୍ନାଥ, ବଳଭଦ୍ର ଓ ସୁଭଦ୍ରା ମୂର୍ତ୍ତୀକୁ ଚୋରାଇ ନେଇଥିଲେ । କଟକ କେନ୍ଦ୍ରାପଡ଼ା ରାସ୍ତାର ସରକାରୀ ନଥିପତ୍ରରେ ପ୍ରକୃତ ନାମ କଟକ

- ଚାନ୍ଦବାଲ ରୋଡ଼ । କଟକ ଚାନ୍ଦବାଲ ରାସ୍ତା ନମୀଣ ପୂର୍ବରୁ ସମ୍ଭବତଃ ଯାତ୍ରୀମାନେ ବ୍ରହ୍ମଣୀ, ବିରୂପା ନଦୀପାର ହୋଇ ଓଡ଼ାସିଂହ ବାଟଦେଇ କଟକ ଆସିଥାନ୍ତ । ଚୈତନ୍ୟ ମହାପ୍ରଭୁ ନୈମ୍ୟାଳ ଓ ପୁରୀ ଏହିବାଟଦେଇ ଆସିଥିଲେ ବୋଲି କୁହାଯାଇଛି । ଓଡ଼ାସିଂହ ଓ ତାର ପାରିପାର୍ଶ୍ୱିକ ଅବସ୍ଥାରୁ ପ୍ରମାଣ ମିଳେଯେ ଗରୁଡ଼ମଠର ଅନତି ଦୂରରେ ଯେଉଁ ପୁଷ୍କରଣୀ ଅଛି, ତାକୁ ହାତୀଖାନା କୁହାଯାଏ । ରାଜାଙ୍କ ହାତୀମାନଙ୍କ ପାଇଁ ଉକ୍ତ ପୁଷ୍କରିଣୀ ଖୋଳାଯାଇଥିଲା ବୋଲି କେହି କେହି କହନ୍ତି । ରାଣୀ ଦୈନିକ ମହାଦେବଙ୍କୁ ଦର୍ଶନ କରିବାପାଇଁ ତାଳପଦାସ୍ଥିତ ମହାଦେବଙ୍କ ମନ୍ଦିରକୁ ଯାଆନ୍ତି । ମନ୍ଦିର ନିକଟରେ ଯେଉଁ ପୁଷ୍କରିଣୀ ଅଛି, ତାକୁ ବଡ଼ ପୋଖରୀ କୁହାଯାଏ । ଏହାର ଆୟତନ ୧୨ ମାଣ, ୧୨ ଗୁଣ୍ଠ, ୧୨ ବିଶ୍ୱା । ପୁରୀରେ ବଡ ଠାକୁରଙ୍କ ନାମ ଅନୁସାରେ ଯେପରି ବଡ଼ପଣ୍ଡା, ବଡ଼ ଦାଣ୍ଡର ନାମ କରଣ ହୋଇଛି, ଠିକ୍ ସେହିପରି ବଡ଼ ପୋଖରୀ, ବଡ଼ ଲହଣ, ବଡ଼ ପ୍ରଧାନ, ବଡ଼ ଧୋବା, ବଡ଼ ପାଟରା ନାମ କରଣ ଏଠାରେ ରହିଛି । ଓଡ଼ାସିଂହ ଗୋଟିଏ ଗାଁ ଯେଉଁଥିରେକି ସବୁ ଜାତିର ଲୋକ ଅଛନ୍ତି । ଠାକୁରଙ୍କ ସେବା ଅର୍ଚ୍ଚନାରେ ବହୁ ଜାତିର ଆବଶ୍ୟକ ଥାଏ । ଏଣୁ ବୋଧହୁଏ ବହୁ ଜାତିର ଲୋକଙ୍କୁ ଏଠାରେ ବସବାସ କରାଇଥିବାର କୁହାଯାଏ ।

ଏଠାରେ ସେହି ସମୟରୁ ରଥଯାତ୍ରା ଆରମ୍ଭ ହୋଇଥିଲା । ମାଉସୀମା ମନ୍ଦିରର ଚିହ୍ନ ବର୍ଣ୍ଣ ଏବେ ନଥିଲେ ମଧ ପଣ୍ଡା ସାହିଠାରେ ମାଉସୀମା ମନ୍ଦିରଥିଲା ବୋଲି ବିଶ୍ୱାସ କରାଯାଉଛି । ସେହି ସ୍ଥାନକୁ ଖଣ୍ଡିଆ ଦେଉଳ କୁହାଯାଏ । ମନ୍ଦିରଠାରୁ ମାଉସୀମା ସ୍ଥାନ ପର୍ଯ୍ୟନ୍ତ ଲମ୍ବା ଓ ଓସାରିଆ ସିଧାରାସ୍ତା ରଥ ଦାଣ୍ଡର ପରିଚୟ ଦିଏ । ସେଠାରୁ ମଧ ଦେଉଳର ଭଗ୍ନାଂଶ ଦେଖିବାକୁ ମିଳେ । ଗରୁଡ଼ଙ୍କ ସାମନାରେ ଯେଉଁ ସୁରମ୍ୟ ମୁଖଶାଳା ନିର୍ମିତ ହୋଇଛି, ତାହା ଯଦୁମଣି ପ୍ରଧାନଙ୍କ ଦ୍ୱାରା ହୋଇଛି ଓ ଗରୁଡ଼ ମନ୍ଦିର ନିକଟସ୍ଥ ନୃସିଂହ ଠାକୁରଙ୍କ ଆସ୍ଥାନ ଓ ମୁଖଶାଳା ତାଙ୍କ ଦ୍ୱାରା ହୋଇଛି ବୋଲି କୁହାଯାଏ । ସେ ମଧ ଗରୁଡ଼ ମନ୍ଦିର ପ୍ରଶାସନରେ ପ୍ରମୁଖ ଭୂମିକା ଗ୍ରହଣ କରିଥିବାର କୁହାଯାଏ । ଇନ୍ଦ୍ରଦ୍ୟୁମ୍ନ ପୁରୀ ଜଗନ୍ନାଥ ମନ୍ଦିର ନିର୍ମାଣ କାର୍ଯ୍ୟ ଶେଷକରି ବର ମାଗିଲେ ଯେ - ''ମୋ ବଂଶରେ କେହି ନରୁହନ୍ତୁ ଭବିଷ୍ୟରେ କେହି ଗର୍ବ କରିବ ଯେ ମୋ ବଂଶ ଦ୍ୱାରା ପୁରୀ ମନ୍ଦିର ନିର୍ମାଣ ହୋଇଛି'', ଠିକ୍ ସେହିପରି ଯଦୁନାଥ ପ୍ରଧାନଙ୍କ ବଂଶରେ କେହି ନାହାନ୍ତି । ଏହା ବିଧିର ନିର୍ଦ୍ଦେଶ ନୁହେଁ ତ ?

ଚୋଡ଼ଗଙ୍ଗ ଦେବ ଯେଉଁ ଜଗନ୍ନାଥ, ବଳଭଦ୍ର, ସୁଭଦ୍ରା ମୂର୍ତ୍ତି ଓ ସିଂହ ଦ୍ୱାରରେ ଯେଉଁ ସିଂହ ସ୍ଥାପନ କରିଥିଲେ ତାହା ଅତି ବିରାଟକାୟ ଥିଲା । ତିନି ଠାକୁରଙ୍କ ଠାରେ ବ୍ରହ୍ମ ସ୍ଥାପନ କରାଯାଇଥିଲା ବୋଲି କୁହାଯାଏ । ଠିକ୍ ପୁରୀ ଢାଞ୍ଚାରେ ଠାକୁରଙ୍କ ସେବାନିତି କରାଯାଉ ଥିଲା ବୋଲି କୁହାଯାଏ । ଭାଗ୍ୟର ବଡ଼ମ୍ବନା । ସୁନ୍ଦର ମନୋରମ ମୂର୍ତ୍ତି ଉପରେ ଲୋଲୁପ ଦୃଷ୍ଟିପଡ଼େ ଦର୍ପଣୀଗଡ଼ ରାଜାଙ୍କର । ସେ ଚୋରାଇ ନେଲେ ଜୀଉମାନଙ୍କୁ କିନ୍ତୁ ଗରୁଡ଼ ଖମ୍ବ ନେବାପାଇଁ ଯେତେବେଳେ ପଥର କଟା କରତରେ କାଟିଲେ ସେବେଳେ ରକ୍ତ ସ୍ରାବ ହେଲା । ଭୟରେ ଲୁଚି ପଳାଇଗଲେ ରାଜ କର୍ମଚାରୀ ଗଣ । ଏବେ ମଧ ଦେଖା ଯାଉଛି ତିନି ଠାକୁର ଦର୍ପଣ ଗଡ଼ ରାଜ ଉଆସରେ । ସେହି ସମୟରେ ତେଲିବଂଶର ରାଜା ଦର୍ପଣୀ ଗଡ଼ରେ ରାଜୁତି କରୁଥିଲେ । ସମ୍ଭବତ ମୂର୍ତ୍ତି ଚୋରୀପରେ ଏଠାରେ ଯୋଉଁ ପୁରୀ ଢ଼ାଞ୍ଚାରେ ରଥଯାତ୍ରା ହେଉଥିଲା, ତାହା ଲୋପପାଇଗଲା ।

କେତେବର୍ଷ ଧରି ରଥଯାତ୍ରା ବନ୍ଦ ହୋଇଛି, ତାହାର ସଠିକ୍ ବିବରଣୀ ମିଳୁନାହିଁ । ୧୨ ବର୍ଷ ଧରି ରଥଯାତ୍ରା ଏବେ ନିୟମିତ କରାଯାଉଚି ଜଣେ ହରିଜନ ଶ୍ରୀ ନବବର ବେହେରା ଜାତି ଚମାରଙ୍କ ଉଦ୍ୟମରେ । କେଜାଣି କହିଁକି ସେ ମନ ବଳେଇଲେ ଯାତ୍ରାପାଇଁ କିନ୍ତୁ କଟରପା ମହନ୍ତ ଶ୍ରୀ ରାମକୃଷ୍ଣ ଦାଶ ଅସମ୍ମତି ପ୍ରକାଶ କରନ୍ତି ଯାତ୍ରାପାଇଁ । ଗରୁଡ଼ ମଠର ଦାୟିତ୍ୱ ତାଙ୍କ ଉପରେ ନ୍ୟସ୍ତ । କଟରପା ରଥଯାତ୍ରା ଏକଦା ଓଡ଼ିଶାର ଦ୍ୱିତୀୟ ବୃହତ୍ତମ ରଥଯାତ୍ରା ଥିଲା । ପୁରୀ ରଥ ଢ଼ାଞ୍ଚାରେ ତିନିରଥ ହୁଏ ଓ ଯାତ୍ରା ହୁଏ ।

ଗରୁଡ଼ ମନ୍ଦିରର ଯାବତୀୟ ଆୟ କଟରପା ମଠ ଭୋଗ କରେ । ଯାହାହେଉନାଁ କାହିଁକି, ଓଡ଼ାସିଂହ ଲୋକଙ୍କ ପ୍ରବଳ ଆଗ୍ରହ ଓ ଚାପ ଯୋଗୁଁ ମହନ୍ତ ରାମକୃଷ୍ଣ ଦାଶ ଯାତ୍ରାପାଇଁ ସମ୍ମତି ଦେବା ଉଦେଶ୍ୟରେ ଓଡ଼ାସିଂହର ପୁରୁଖା ସମ୍ଭ୍ରାନ୍ତ ମୁରବୀ ଓ ଏକଦା ଗରୁଡ଼ ମଠ ପ୍ରଶାସନ ମଧରେ ସାମିଲ ଥିବା ବ୍ୟକ୍ତି ଶ୍ରୀନିଶାମଣି ପ୍ରଧାନଙ୍କ ସମ୍ମତି ଲୋଡ଼ି ଠାକୁରଙ୍କ ଦାୟିତ୍ୱ ତାଙ୍କ ଉପରେ ନ୍ୟସ୍ତ କଲେ ଓ ଯାତ୍ରା ଗ୍ରାମବାସୀଙ୍କ ଖର୍ଚ୍ଚରେ ଅନୁଷ୍ଠିତ ହୋଇଥାସୁଅଛି ।

ପ୍ରଥମ ବର୍ଷ ମହନ୍ତ ମହାଶୟ ଛେରା ପହଁରା କରିବା ପରେ ତାଙ୍କ ପୁତୁରା ଶ୍ରୀମାନ ରଂଜନ ସେହି କାର୍ଯ୍ୟ ତୁଲାଇ ଆସୁଛନ୍ତି ।

# ଜଗନ୍ନାଥ - ଗରୁଡ଼ - ନୃସିଂହ

ଶ୍ରୀ ଜଗନ୍ନାଥଙ୍କ ସେବାରେ କଶ୍ୟପ ପୁତ୍ର ଗରୁଡ଼ଙ୍କର ଯେପରି ସମ୍ବନ୍ଧ ଅଛି, ନୃସିଂହଙ୍କର ବୈଶେଷତ୍ୱ କିଛି କମ୍ ନୁହେଁ । ନୃସିଂହ ଜଗନ୍ନାଥ ଧର୍ମଧାରାର ଯଜ୍ଞାଧିପତି । ନବକଳେବର ପରିପ୍ରେକ୍ଷୀରେ 'ବନଜାଗ' ପଦ୍ଧତିରେ ଯଜ୍ଞାଧିପତି ଶ୍ରୀ ନୃସିଂହ ଭଗବାନଙ୍କୁ ଆବାହନ ଏବଂ ଉପାସନା ସହ ଶ୍ରୀବିଗ୍ରହ ନିମନ୍ତେ ବିଦ୍ୟ ଦାରୁ ଗୃହୀତ ହୋଇଥାଏ । ପରମାତ୍ମା ନିଳାଦ୍ରିନାଥ ଜଗନ୍ନାଥ ମହାପ୍ରଭୁ ଆପଣାର ଜୀର୍ଣ୍ଣ ଶରୀର ପରିତ୍ୟାଗ କରି ପୁରୁଷୋତ୍ତମ କ୍ଷେତ୍ର ଓ ତତ୍ତ୍ୱର ଆଦିଦେବତା ଶ୍ରୀ ଶ୍ରୀ ନୃସିଂହ ଭଗବାନ ସ୍ୱରୂପ ଶକ୍ତି ଆଶ୍ରିତ ହୋଇ ପୁନଃ ନୂତନ ଶରୀର ଧାରଣ କରନ୍ତି ।

ବନଯାଗର ଉପାସ୍ୟ ଦେବତା ହେଉଛନ୍ତି ଯଜ୍ଞାଧିପତି ଶ୍ରୀ ନୃସିଂହ । ବନଯାଗ ଅନୁଷ୍ଠାନରେ ପାତାଳ ନୃସିଂହ ମନ୍ତ୍ରରେ ଏକ ଅୟୁତ ଆହୁତି ପ୍ରଦାନ କରାଯାଏ । ଏହି ସମୟରେ ଦଇତାପତିମାନେ ନିର୍ଜଳ ଉପାସନା କରି ମହା ନୃସିଂହ ମନ୍ତ୍ରରେ ଜପ କରନ୍ତି । ସେହି ସମୟରେ ଆଦି ଦେବତା ନୃସିଂହଙ୍କୁ ସମସ୍ତେ ଅନ୍ତଃକରଣରେ ଧ୍ୟାନ କରୁଥାନ୍ତି ।

ବନ ଯାଗର ଦ୍ୱିତୀୟା ଦିବସରେ ପୂର୍ଣ୍ଣାହୁତିପରେ ବିଦ୍ୟାପତି ପତି ମହାପାତ୍ର ନୃସିଂହ ମନ୍ତ୍ରରେ ସ୍ୱର୍ଣ୍ଣ କୁଠାର ସାହାଯ୍ୟରେ ଦାରୁ ଛେଦନ କାର୍ଯ୍ୟ ଆରମ୍ଭ କରନ୍ତି ।

ଖାଲି ସେତିକି ନୁହଁ, ଦେବସ୍ନାନ ପୂର୍ଣ୍ଣିମାଠାରୁ ନବକଳେବର ଯଜ୍ଞ ଅନୁଷ୍ଠିତ ହୁଏ । ଏହି ଯଜ୍ଞରେ ମଧ୍ୟ ମୁଖ୍ୟ ଉପାସ୍ୟ ନୃସିଂହ ଅଟନ୍ତି । ଶ୍ରୀଜଗନ୍ନାଥଙ୍କ ସ୍ନାନ ମହୋତ୍ସବ ପରେ ଦାରୁ ମଣ୍ଡପରେ ଦାରୁମାନଙ୍କର ସ୍ନାନ କରାଯାଏ । ନୃସିଂହଙ୍କ ମନ୍ତ୍ରରେ ନବକଳେବର ଗଠନ କରାଯାଏ । ବ୍ରହ୍ମ ସ୍ଥାପନ ଦିନ ମଧ୍ୟ ନ୍ୟାସ ପୂର୍ବକ ନୃସିଂହ ମନ୍ତ୍ରରେ ପୂର୍ଣ୍ଣାହୁତି ଦିଆଯାଏ ।

ବିଗ୍ରହ ତତ୍ତ୍ୱରେ ଶ୍ରୀ ନୃସିଂହ ହେଉଛନ୍ତି ସ୍ତମ୍ଭଜାତ ମହାବଳ ଓ ଶ୍ରୀଜଗନ୍ନାଥ ହେଉଛନ୍ତି ଦାରୁ ଜାତ ମହାପ୍ରଭୁ । ବ୍ରହ୍ମା ଦେବର୍ଷିନାରଦ ଓ ଇନ୍ଦ୍ର ଦ୍ୟୁମ୍ନଙ୍କୁ ବୁଝାଇଥିଲେ କି ପୁରୁଷୋତ୍ତମ ଶ୍ରୀଜଗନ୍ନାଥ ମହାପ୍ରଭୁ ହେଉଛନ୍ତି ନୃସିଂହ ମନ୍ତ୍ରର ଦେବତା । ନୃସିଂହଙ୍କୁ ସ୍ମରଣ କରିବାରେ ଜଗନ୍ନାଥ ଦର୍ଶନର ଫଳପ୍ରାପ୍ତି ହୁଏ ବୋଲି କେତେକ ପୁରାଣରେ ବର୍ଣ୍ଣିତ ଅଛି ।

ଦ୍ୱିତୀୟ ଶ୍ରୀକ୍ଷେତ୍ର ରୂପେ ପରିଚିତ  ଗରୁଡ଼ ପୀଠ ଓଡାସିଂହରେ ପ୍ରଖ୍ୟାତ ନୃସିଂହ ଠାକୁର ବିଦ୍ୟମାନ । ଗରୁଡ଼ ପୀଠରେ ଯଜ୍ଞ ପୂର୍ବରୁ ନୃସିଂହଙ୍କ ଜାତକ ରାଶି 'ବିଛା' ଅନୁସାରେ ଯଜ୍ଞର ନାମ ଓ ମଣ୍ଡପର ମାପ ପ୍ରଭୃତି ସ୍ଥିରୀକୃତ ହୋଇଛି । ପ୍ରଥମେ ନୃସିଂହଙ୍କୁ ଆବାହନ କରାଯାଇ, ସେଠାରୁ ଆଜ୍ଞାମାଳ ସଂଗ୍ରହ କରିବା ପରେ ଯଜ୍ଞଶାଳାର ଭିତ୍ତି ସ୍ଥାପନ କରାଯାଉଛି ।

ଓଡ଼ାସିଂହର ନୃସିଂହ ବୁଦ୍ଧଦେବ-ଯୁଗର  କୁହାଯାଏ । ଓଡ଼ାସିଂହ ଗ୍ରାମର ମଧ୍ୟଭାଗରେ ବିରାଟକାୟ ବଟ ବୃକ୍ଷ ମୂଳେ ଦୀର୍ଘଦିନ ନୃସିଂହ ରହିଲାପରେ ସେଠାରେ ଗ୍ରାମବାସୀଙ୍କ ଉଦ୍ୟମରେ ମନ୍ଦିର ନିର୍ମାଣ କରାଯାଇଥିଲା । ଏହି ମନ୍ଦିର ନିର୍ମାଣରେ ସ୍ୱର୍ଗତ ଇନ୍ଦ୍ରମଣି ପ୍ରଧାନ ଏବଂ ଯଦୁମଣି ପ୍ରଧାନଙ୍କର ଭୂମିକା ଅଗ୍ରଗଣ୍ୟ । ସେ ମଧ୍ୟ ଲେଖକଙ୍କ ପିତାଙ୍କ ବଡ଼ ଭାଇ ।

ନୃସିଂହ ଠାକୁର ଓଡ଼ାସିଂହ ଗ୍ରାମର ଇଷ୍ଟଦେବତା । ଗ୍ରାମବାସୀଙ୍କ ପକ୍ଷରୁ ଯେକୌଣସି ମାଙ୍ଗଳିକ କାର୍ଯ୍ୟରେ ନୃସିଂହ ଠାକୁରଙ୍କୁ ବରଣ କରାଯାଏ । ପ୍ରତି ବର୍ଷ ତାଙ୍କ ଜନ୍ମ ଦିନ ବୈଶାଖ ଚତୁର୍ଦ୍ଦଶୀ ତିଥିରେ ଯଜ୍ଞାଦି କାର୍ଯ୍ୟ କରାଯାଏ ।

## ଓଡ଼ିଶାରେ ପଥର କୀର୍ତ୍ତି ଓ ତାର ଧ୍ୱଂସ

ସମଗ୍ର ଭାରତ ସମେତ ଓଡ଼ିଶାର ପ୍ରସ୍ତର କୀର୍ତ୍ତିର ଅଭ୍ୟୁଦୟ ହୋଇଥିଲା ନବମ ବା ଦଶମ ଶତାବ୍ଦୀ ବେଳକୁ । ଓଡ଼ିଶାରେ ବ୍ୟାପକ ଭାବେ କଳା ସ୍ଥାପତ୍ୟ ବିକାଶ ଲାଭକଲା କପିଳେନ୍ଦ୍ର ଦେବଙ୍କ ଶାସନ କାଳରେ । ତାଙ୍କ ଶାସନ କାଳ ୧୪୧୯ - ୧୪୪୯ । କଟକ ଜିଲ୍ଲାର ପଦ୍ମପୁର ପ୍ରଗଣା ମଧ୍ୟରେ ଗୋପୀନାଥ ପୁର ଗ୍ରାମରେ ଏକ ମନ୍ଦିର ଅଛି । ଏଠାରୁ ମିଳିଥିବା ଶିଳାଲିପିରୁ ଜଣାପଡ଼େ, କପିଳେନ୍ଦ୍ର ଦେବଙ୍କ ସମୟରେ ଉକ୍ତ ମନ୍ଦିର ନିର୍ମାଣ କରାଯାଇ ଜଗନ୍ନାଥ, ବଳଭଦ୍ର ଓ ସୁଭଦ୍ରାଙ୍କୁ ସ୍ଥାପନା କରାଯାଇଥିଲା । ଏତଦ୍ ବ୍ୟତୀତ ଏବେ ମଧ୍ୟ ବହୁ ବୌଦ୍ଧ କୀର୍ତ୍ତି ମାଟିତଳେ ପୋତି ହୋଇଛି, ଓ କେତେକ ସ୍ଥାନରେ ଏହାର ଉଦ୍ଧାର କରାଗଲାଣି । ଏବେ ଜଗତସିଂହପୁର ଓ କେନ୍ଦ୍ରାପଡ଼ା ଅଞ୍ଚଳକୁ ବହୁ ବୌଦ୍ଧ କୀର୍ତ୍ତି ଆବିଷ୍କାର କରାଯାଇଛି । ଓଡାସିଂହ ଓ ତାର ଆଖପାଖ ଅଞ୍ଚଳରେ ବହୁ କୀର୍ତ୍ତି ମାଟି ତଳୁ ଉଦ୍ଧାର କରାଯାଇଛି । ଓଡ଼ାସିଂହଠାରେ ଏକ ପାଣିକଳ ବସାଇବା ବେଳେ ସୁନ୍ଦର ଲକ୍ଷ୍ମୀ ମୂର୍ତ୍ତି, ଗୋଟିଏ କୂଅ

ଖୋଳିଲା ବେଳେ ଏକ ଗରୁଡ଼ ମୂର୍ତ୍ତି, ଗୋଟିଏ ବିଲରୁ ମାଟି ତାଡିଲା ବେଳେ ଦୁର୍ଗା ମୂର୍ତ୍ତି ଓ ଗୋଟିଏ ମନ୍ଦିରର ଦଧିନୌତି ଆବିଷ୍କାର କରାଯାଇ ଯଥାବିଧି ପୂଜା ଅର୍ଚ୍ଚନା କରାଯାଉଛି। କିନ୍ତୁ ଏଠାରେ ରମ୍ୟକ ଦ୍ୱୀପରେ ପୂଜାପଉଥିବା ଗରୁଡ଼ ମୂର୍ତ୍ତି କେବେ ନିର୍ମିତ ହୋଇଥିଲା, ତାହାର କୌଣସି ଐତିହାସିକ ସନ୍ଧାନ ଏପର୍ଯ୍ୟନ୍ତ ମିଳିନାହିଁ। ବସ୍ତୁତଃ ଏହା ସତ୍ୟଯୁଗର କୀର୍ତ୍ତି। ସମ୍ଭବତଃ ଓଡ଼ିଶାର ବହୁ ପ୍ରାଚୀନ କୀର୍ତ୍ତି କଳାପାହାଡ ଆଉରଙ୍ଗ ଜେବଙ୍କ ସମୟରେ ନଷ୍ଟହୋଇଯାଇଥିବାର ଅନୁମାନ କରାଯାଏ। ଭାରତ ସମେତ ଓଡ଼ିଶାରେ ଆଫଗାନୀ ମୋଗଲ ମରହଟ୍ଟା ଶାସନ କାଳରେ, ଦେଶୀୟ ରାଜା - ମାନେ ଦୁର୍ବଳ ହୋଇ ରାଜସିଂହାସନ ହରାଇଲେ। ମୁସଲମାନ ମାନଙ୍କ ପ୍ରାଦୁର୍ଭାବ ବଢ଼ିଚାଲିଲା। ଗଙ୍ଗ ବଂଶର ରାଜା ମାନେ ଦୁର୍ବଳ ହୋଇ ପଡ଼ିବାରୁ ଏ ଅଞ୍ଚଳ ମୋଗଲ ଶାସନାଧିନ ହେଲା। ଫଳରେ ଏହି ଅଞ୍ଚଳକୁ ମୋଗଲ ବନ୍ଦୀ ଆଖ୍ୟ ଦିଆଯାଇଛି। ଦେଶୀୟ ରାଜା ଦୁର୍ବଳ ହେବାରୁ ଗଡ଼ଜାତରାଜା ଦର୍ପଣୀ ରାଜା ଏହାର ସୁଯୋଗରେ ମୂର୍ତ୍ତି ଚୋରାଇ ନେଇଥିବାର ଅନୁମାନ କରାଯାଏ। ଜନଶ୍ରୁତି ଅନୁସାରେ ଓଡ଼ାସିଂହର ଲକ୍ଷ୍ମୀଧର ପଣ୍ଡା ନାମକ ଜଣେ ବ୍ରାହ୍ମଣ ଦର୍ପଣୀ ଗଡ଼ ମନ୍ଦିରରେ ପୂଜକ ରୂପେ କାମକରୁଥିଲେ। ସେ ସେଠାରୁ ଲକ୍ଷ୍ମୀ ମୂର୍ତ୍ତି ଚୋରାଇ ଆଣିଥିବାର ପ୍ରତିଶୋଧ ପୂର୍ବକ ଦର୍ପଣୀରାଜା ଓଡ଼ାସିଂହରୁ ମୂର୍ତ୍ତି ଚୋରାଇଥିବାର କୁହାଯାଏ।

**କଟରପା ମଠ - ମହନ୍ତକୁ ମହରାଜ କୁହାଯାଏ !**

ଏକଦା ମଠର ପରିଚାଳନା ପୁରୀ ଗଜପତି ମହାରାଜ ବଂଶ ଦ୍ୱାରା ପରିଚାଳିତ ହେଉଥିଲା ଓ ମଠରେ ଅଧିକୃତ ରାଜ ବଂଶର ଶାସକଙ୍କୁ ମହରାଜା କୁହାଯାଏ। ରାଜ ବଂଶ ବିଲୋପପରେ ଯେତେବେଳେ ସେହି ଗାଦିରେ ମଠ ମହନ୍ତ ବସିଲେ, ତାଙ୍କୁ ମଧ ମହରାଜା କୁହାଗଲା। ଏବେବି ମଠ ମହନ୍ତଙ୍କୁ ମହାରାଜା ଭାବେ ସ୍ଥାନୀୟ ଲୋକେ ସମ୍ମାନିତ କରିଥାନ୍ତି। ପୁରୀ ଗଜପତି ରାଜା ତିନିରଥର ଛେରାପହଁରା କରନ୍ତି ଓ ସେହିପରି ଏଠାରେ ମହନ୍ତ ମଧ ତିନି ରଥର ଛେରାପହଁରା କରନ୍ତି।

**କଳାପାହାଡ଼ ପ୍ରସଙ୍ଗ**

ଖ୍ରୀ: ୧୫୬୮ରେ ମୁକୁନ୍ଦ ଦେବଙ୍କ ସମୟରେ କଟକ ସମେତ ଓଡ଼ିଶା

ଆଫଗାନମାନଙ୍କ ଦ୍ୱାରା ଅଧିକୃତ ହେଲା । ଆଫଗାନ ମାନଙ୍କ ସହିତ ଥିଲେ କଳା ପାହାଡ଼ । କଳା ପାହାଡ଼ର ଅନ୍ୟନାମ କଳିଦାସ ଗଜାଦାନି । ସେ ବ୍ରାହ୍ମଣ ଥିଲେ । ମାତ୍ର ଏକ ମୁସଲମାନ ଯୁବତୀର ପ୍ରେମରେ ପଡ଼ି ମୁସଲମାନ ହୋଇଗଲେ । ପରେ ସେ ହିନ୍ଦୁ ସମାଜର ଅନ୍ତର୍ଭୁକ୍ତ ହେବାପାଇଁ ଚେଷ୍ଟାକଲେ । ସେଥିପାଇଁ ମୁକୁନ୍ଦଦେବଙ୍କ ସାହାଯ୍ୟ ଲୋଡିଲେ । ସମାଜର କଠୋର ନିୟମ ଯୋଗୁଁ ତାଙ୍କୁ ହିନ୍ଦୁ କରାଗଲା ନାହିଁ । ତେଣୁ ସେ ମୁକୁନ୍ଦ ଦେବଙ୍କ ଉପରେ ପ୍ରତିହିଂସା ପରାୟଣ ହୋଇ ଓଡ଼ିଶାକୁ ନଷ୍ଟ କରିବା ପାଇଁ ଜୟଯାତ୍ରା ଆରମ୍ଭ କଲେ । ସେଥିରେ ସେ କୃତକାର୍ଯ୍ୟ ହେଲେ ।

ଯୁଦ୍ଧରେ ଜୟଲାଭ କରି ପ୍ରଥମେ କଳାପାହାଡ଼ ଭୁବନେଶ୍ୱରର ମନ୍ଦିର ଧ୍ୱଂସକରି ପୁରୀ ଅଭିମୁଖେ ବାହାରିଲେ ଜଗନାଥ ମନ୍ଦିର ଧ୍ୱଂସ ପାଇଁ । ଏ ଖବର ପାଇ ସେଠାକାର ମନ୍ଦିର ପ୍ରଶାସକ ଗଣ ତିନିଠାକୁରଙ୍କୁ ଚିଲିକା ଭିତରେ ଥିବା ପାରିକୁଦରେ ଲୁଚାଇ ଦେଇଥିଲେ ବୋଲି କେହି କେହି କୁହନ୍ତି । କଳାପାହାଡ଼ ଉଦ୍‌କ୍ଷିପ୍ତ ହୋଇ ପୁରୀ ମନ୍ଦିରର ବାବନ କୋଟି ଭଣ୍ଡାର ଲୁଣ୍ଠନ କରିଗଲେ । କଳ୍ପବଟ ବୃକ୍ଷକୁ ଉପାଡ଼ି ଭସ୍ମ କରିଦେଇଗଲେ । କଳାପାହାଡ଼ ମଧ କୋଣାର୍କ ମୂର୍ତ୍ତି ଭାଙ୍ଗି ଦେଇଥିଲେ ବୋଲି କୁହାଯାଏ । ସେ କେବଳ ଭୁବନେଶ୍ୱର, ପୁରୀ ଓ କୋଣାର୍କ ମନ୍ଦିର ଭାଙ୍ଗିନଥିଲେ, ଓଡ଼ିଶାରେ ଅନ୍ୟାନ୍ୟ ଅଞ୍ଚଳରେ ଥିବା ମନ୍ଦିର ମୂର୍ତ୍ତି ଗୁଡ଼ିକୁ ଭାଙ୍ଗିଥିଲେ ବୋଲି କୁହାଯାଏ ।

ଏଠା ଚାଟେଶ୍ୱର ମନ୍ଦିର ଶିଳାଲିପିରୁ ଜଣାପଡ଼େ ଯେ, ଗଙ୍ଗ ବଂଶ ଶାସନ ସମୟରେ ଏହି ମନ୍ଦିର ନିର୍ମିତ ହୋଇଥିଲା । ଏତଦ୍‌ବ୍ୟତୀତ ଗଙ୍ଗ ବଂଶ ରାଜା ଅନଙ୍ଗଭୀମ ଦେବଙ୍କ ସହ ମୁସଲମାନ ନବାବ ମଧରେ ଭୟଙ୍କର ଯୁଦ୍ଧ ହୋଇଥିଲା । ଅନଙ୍ଗଭୀମ ଦେବ ଏକାକୀ ବହୁ ମୁସଲମାନ ଯୋଦ୍ଧାଙ୍କୁ ହତ୍ୟା କରିଥିଲେ । ସେହି ସମୟରେ ବହୁ ଦେବା - ଦେବୀ ମନ୍ଦିର ନଷ୍ଟ ହୋଇଯାଇଥିଲା । ସେହି ସମୟରେ ମଧ ବହୁ ହିନ୍ଦୁ ଜୀବନ ବିକଳେ ମୁସଲମାନ ହେବାକୁ ବାଧ୍ୟ ହୋଇଥିଲେ । ତା ପୂର୍ବରୁ ସମ୍ଭବତଃ ଏହିଭଳି ଏକ ସମୟରେ ଓଡାସିଂହର ମାଉସୀମା ମନ୍ଦିର ନଷ୍ଟ ହୋଇଥିଲା । ଓଡ଼ାସିଂହ ଅଞ୍ଚଳ ପାଖାପାଖି ଏକ ବିରାଟ ମୁସଲମାନ ବସ୍ତି ରହିଛି । ସେମାନେ ହିନ୍ଦୁରୁ ମୁସଲମାନ ହୋଇଥିବା ଅନୁମାନ କରାଯାଏ ।

ଭାରତ ଏକ ବିଶାଳ ଭୂଖଣ୍ଡ । ବର୍ତ୍ତମାନର ପାକିସ୍ଥାନ, ବଙ୍ଗଳା ଦେଶକୁ ନେଇ ବିଶାଳ ଭାରତର ପରିକଳ୍ପନା କରାଯାଇଥିଲା । ଦେଶଟି ବିଶାଳହେଲେ କଣ ହେବ, ଏହାଁ ବକ୍ଷିପ୍ତ ଅବସ୍ଥାରେ ବିଭିନ୍ନ ରାଜାଙ୍କ ଦ୍ୱାରା ଶାସିତ ହେଉଥିଲା । ସେହି ସମୟରେ ରାଜାମାନେ ପରସ୍ପରକୁ ହିଂସାକରି ପର ରାଜ୍ୟ ଅଧିକାର ପାଇଁ ସଦାସର୍ବଦା ଯୁଦ୍ଧ ଖୋର ଥିଲେ । ଭାରତ କେବେ ହେଲେ ଏକ ଶାସନାଧୀନ ନଥିଲା । ସେହି ସୁଯୋଗରେ ୧୧୭୫ରେ ଆଫଗାନ୍ ରାଜା ମହମ୍ମଦ ଘୋରୀ ଭାରତ ଆକ୍ରମଣ କଲେ । ଏହା ଭାଗ୍ୟର ବିଡ଼ମ୍ବନା । ପୃଥ୍ୱୀରାଜ ତାଙ୍କ ଭାଈ ଜୟଚନ୍ଦ୍ରଙ୍କୁ ପରାସ୍ତ କରିବାପାଇଁ ମହମ୍ମଦ ଘୋରୀଙ୍କ ଶରଣାପନ୍ନ ହୋଇଥିଲେ । ଶେଷରେ ଘୋରୀଙ୍କ ଦ୍ୱାରା ନିହତ ହେଲେ । ରାଜ୍ୟଦଖଲ କଲେ ଘୋରୀ । ସେହି ସମୟଠାରୁ ଓଡ଼ିଆ ସମେତ ଭାରତ ହତଶ୍ରୀ ହେଲା ।

ଏ ପ୍ରସଂଗ ଏତେ ବ୍ୟାପକ, ଏ ସଂବନ୍ଧରେ ଆଲୋଚନା ମୋ ପକ୍ଷେ ସମ୍ଭବ ନୁହେଁ । କେବଳ ଓଡ଼ାସିଂହ ଅଞ୍ଚଳ ଓ ଏଠାର ପ୍ରତିଷ୍ଠିତ ପାତାଳୀ ଗରୁଡ଼ଙ୍କ ସଂପର୍କରେ ଧାର୍ମିକ, ପୌରାଣିକ, ଐତିହାସିକ ଓ ପ୍ରତ୍ନତତ୍ତ୍ୱଗତ କିଛି ଆଲୋଚନା କରିଛି ।

ଓଡ଼ାସିଂହ ଅଞ୍ଚଳର ପାତାଳୀ ଗରୁଡ଼ ଏକ ଅଲୌକିକ ଶକ୍ତିର ଉତ୍ସ ଓ ନାନା ଘାତ-ପ୍ରତିଘାତ ଭିତରେ ଏହି ଶକ୍ତିକୁ ଖଣ୍ଡିତ, ଖର୍ବିତ କରାଯାଇ ନାହିଁ । ସାଲେପୁର - ମାହାଙ୍ଗା ଅଞ୍ଚଳର ଗୋଡ଼ି, ମାଟିଭିତରେ ଯେଉଁ ତତ୍ତ୍ୱ, ଗୂଢ - ପରମ୍ପରାଗତ - ରହସ୍ୟ ରହିଛି, ତା'ର ସମ୍ୟକ୍ ଉନ୍ମୋଚନ କରାଗଲେ ଆମ ରାଜ୍ୟର ବିପୁଳ ଐତିହ୍ୟ ଅଧିକ ପ୍ରକଟିତ ହେବ ।

ମନ୍ଦିର ମାଳିନୀ ଉତ୍କଳ ଭୂମିର ଓଡ଼ାସିଂହ ଏକ ଅଖ୍ୟାତ ଗ୍ରାମ ହୋଇପାରେ, ମାତ୍ର ପ୍ରଖ୍ୟାତ - ସଂସ୍କୃତିର ବାହକ ବୋଲି ନିଃ ସନ୍ଦେହରେ କୁହାଯାଇପାରେ । ପରିଶେଷରେ ଶ୍ରୀ ବଳଭଦ୍ର, ଶ୍ରୀ ଜଗନ୍ନାଥଙ୍କୁ ବିଶ୍ୱ କଲ୍ୟାଣ ପାଇଁ ପ୍ରାର୍ଥନା କରି ବିରତ ହେଉଛି ।

"ନିଳାଚଳ - ନିବ୍ୟସାୟ - ନିତ୍ୟାୟ ପରମାତ୍ମନେ
ବଳଭଦ୍ର - ସୁଭଦ୍ରାଭ୍ୟାଂ ଜଗନ୍ନାଥାୟତେ ନମଃ"

